# ବାଲୁଗାଁ ବାଲ୍ମିକୀ

ଆବିର୍ଭାବ : ୨୮-୬-୧୯୫୧
ତିରୋଧାନ : ୧୪-୩-୨୦୨୩





**କି**ଏ ଜଣେ କହିଥିଲେ – "ଲଭ୍ ରୁଲ୍ସ୍ ଦି ୟୁନିଭର୍ସ"। ପ୍ରେମ ଦ୍ୱାରା ଶାସିତ ହେଉଥିବା ଲୋକମାନଙ୍କଠୁ ଏ କଥାର ସତ୍ୟତା ଆଉ ଅଧିକ କିଏ ବା ଜାଣେ ?

ତପନ ଭାଇ ନିଜ ଅଜାଣତରେ ସେମିତି ଏକ ପ୍ରେମ-ସାମ୍ରାଜ୍ୟ ଗଢ଼ିଥିଲେ; ବରଂ କୁହାଯାଇପାରେ ଯେ ତପନ ଭାଇଙ୍କ ପ୍ରେମ ସେ ସାମ୍ରାଜ୍ୟ ଗଢ଼ିଥିଲା। ଆଉ ଆମେ ସବୁ ସେ କମନୀୟ ସ୍ନିଗ୍ଧ ସୁନ୍ଦର ସାମ୍ରାଜ୍ୟର ସୁଖୀ ପ୍ରଜା ଭାବରେ ବେଶ୍ ପରିପୂର୍ଣ୍ଣତା ଓ ପରିତୃପ୍ତି ଆସ୍ୱାଦନ କରୁଥିଲୁ। କିନ୍ତୁ ସପ୍ତାହକ ତଳେ ସେ ସୁଖୀ ସାମ୍ରାଜ୍ୟ ହଠାତ୍ ମହାକାଳଗର୍ଭରେ ମହେଂଜୋଦାରୋ ପାଲଟିଗଲା ! ତପନ ଭାଇ ! ତମେ କାହିଁକି ଏମିତି ତରତର ହୋଇ ଫେରିଗଲ ?

କବିବର ଲେଖିଥିଲେ –

"କରିଥିଲି ଆଶା କରିବି ଯାପନ / ତୋ' ପଶ୍ଚିମ ତୀରେ ପଶ୍ଚିମ ଜୀବନ।"

ତପନ ଭାଇ କିନ୍ତୁ ଶୋଭାର ଭଣ୍ଡାର ସେଇ ମରାଳ ମାଳିନୀ ଚିଲିକାର ଚିତ୍ରାର୍ପିତ କୂଳରେ ତାଙ୍କର ପଶ୍ଚିମ ଜୀବନ ନୁହେଁ, ଆଦ୍ୟ ଓ ମଧ୍ୟ ଜୀବନ ହିଁ ଯାପନ କରିବା ଆରମ୍ଭ କରିଥିଲେ। ଆଉ ଚିଲିକାକୁ ଭଲ ପାଉ ପାଉ ତାଙ୍କ ହୃଦୟର କ୍ଷେତ୍ରଫଳ ମଧ୍ୟ ଚିଲିକା ପରି ସୁବିଶାଳ ପାଲଟି ଯାଇଥିଲା। ତାଙ୍କ ଭଲପାଇବାର ରସାୟନଟି, କ୍ରମଶଃ ଏକ ଚୁମ୍ବକୀୟ କ୍ଷେତ୍ରରେ ରୂପାନ୍ତରିତ ହୋଇଯାଇଥିଲା ଏବଂ ତାହା ଅନାୟାସରେ ଚତୁଃପାର୍ଶ୍ୱର ପୃଥିବୀକୁ ଆକର୍ଷି ଆଣୁଥିଲା।

କର୍କଟ ଓ କିଡ୍‌ନି ରୋଗର ବାହାନାରେ ସ୍ୱୟଂ ଅଦୃଷ୍ଟ ଆସି ତମ ଶତ୍ରୁପକ୍ଷରେ ତାଙ୍କ ଅସ୍ତ୍ରଶସ୍ତ୍ରରେ ଶାଣ ଦେଲେ। ହୁଏତ ଈର୍ଷାରେ ତମ ଶ୍ରଦ୍ଧା-ସାମ୍ରାଜ୍ୟର ପ୍ରଜାଙ୍କ ପ୍ରାର୍ଥନା ଅଦୃଷ୍ଟର ଧାତବ ନିଷ୍ଠୁରତାରେ ଧକ୍କା ଖାଇ ଅସହାୟ ଭାବେ ଭୂଲୁଣ୍ଠିତ ହୋଇଗଲା। ଏବଂ ଏବେ ଏଠି ନିର୍ଜନତାର ରଙ୍ଗ, ଦେଖ ତପନ ଭାଇ, କେଡ଼େ କରୁଣ ଓ ଉଦାସ !

ଯଦି ଜୀବନ ସେପାରିରେ ବି ସତରେ ଆଉ ଏକ ଜୀବନ ଥିବ, ତେବେ ସେଇଠି ତ ନିଶ୍ଚେ ଭେଟ ହେବ ତପନ ଭାଇ। ତୁମର ସବୁ ବାକି ସ୍ୱପ୍ନକୁ ଆମେ ସମସ୍ତେ ମିଶି ସେଇଠି ବାସ୍ତବତାର ରୂପ ଦେବା। ଆଉ ସେ ପୃଥିବୀରେ ତ କର୍କଟ ନ ଥିବ, ହୃଦ୍‌ରୋଗ କି ଡାଏଲିସିସ୍ ନଥିବ। ସେଠି ମିଛ, ଛଳନା, ପ୍ରତାରଣା ନଥିବ, ତେଲ ଲୁଣ ଚିନ୍ତା ନ ଥିବ, ଘର ସଂସାରର ଜଞ୍ଜାଳ ନଥିବ – ମରଣର ଭୟ ବି ନ ଥିବ। ସେଠି ଥିବେ କେବଳ କବିତା, ପ୍ରେମ ଓ ପ୍ରିୟଜନ। ଏବଂ ତୁମ 'କଳା ବଦନ' !

**ପ୍ରସନ୍ନ କୁମାର ମହାନ୍ତି**
**ଅଜିତ ଦାଶ ମହାପାତ୍ର**
**କମଳ କୁମାର ମହାନ୍ତି**





## ଶ୍ରଦ୍ଧାଞ୍ଜଳି ବାଢ଼ିଛନ୍ତି...









# ମୁଁ ତପନ ପାଖରେ କୃତଜ୍ଞ

**ହରିହର ମିଶ୍ର**

'ଦିବ୍ୟ ଅସଂତୋଷ' କବିତା ବହି ସାରଳା ପୁରସ୍କାର ପାଇଲା । ସେ ତା'ର ପ୍ରକାଶକ । ସେ ମୋର ନଅଗୋଟି ଏକତ୍ର ନାଟକର ପ୍ରକାଶକ । ତାର 'ଦୁଃଖ ଗୋଟିଏ ଗାଁ'ର ନାଁ' କବିତା ବହିକୁ ନେଇ ପ୍ରବନ୍ଧ ଲେଖି ମୁଁ ମୋ ଆଲୋଚନା ବହିଟିରେ ସ୍ଥାନିତ କରିଛି ।

ସେ ନୟାଗଡ଼ରେ ଥିଲାବେଳେ ଭଲଭଲ ଗୀତ ଲେଖୁଥିଲା । ଗାୟକ ନବ ମିଶ୍ର ତା' ଗୀତକୁ ଲୋକପ୍ରିୟ କରାଇଥିଲା । 'ମୁଁ ଆସିଛି ଦେଖି ମୋ କଳାବଦନକୁ' ଗୀତଟି ବସ୍ ଟ୍ରେନ୍ ରେ ଭିକାରୀମାନେ ଗାଉଥିବା ମୁଁ ଶୁଣିଛି ।

ସେ କେତୋଟି ଉପନ୍ୟାସ ଲେଖିବା ଆଗରୁ ମୋ ସହିତ ଆଲୋଚନା କରେ । ଚଳଚ୍ଚିତ୍ର ପାଇଁ ଉପଯୁକ୍ତ ସେସବୁ କାହାଣୀ । ପୁରୀକୁ ବହୁ ପିଲାଦିନୁ ସେ ଆସିଥିଲା । ମୁଁ ପ୍ରସନ୍ନ ମିଶ୍ରଙ୍କ ସହିତ ତାଙ୍କୁ ଦେଖିଥିଲି । ସେ ପିଲାଦିନରୁ କବିତା ଲେଖି ଆସୁଥିଲା । ଦୁଃଖ ତା' ଜୀବନସାଥୀ ।

ନିଲମ୍ୱନ କାନ୍ସର୍ ସଂକ୍ରମଣ ତା' ଶରୀର ଓ ମନ ଉପରେ ଅତ୍ୟାଚାର କରିଗଲା ।

ପ୍ରକାଶନ ବହି ବିତରଣ ତା' ଜୀବନ ନିର୍ବାହର ବାଟ ହୋଇ ପଡ଼ିଲା ।
କବିକର୍ମ କରି ବିନା ରୋଜଗାରରେ ଜୀବନ କାଟୁଥିଲା ।
ମୁଁ ତା' ପରିବାର ପ୍ରତି ସମବ୍ୟଥା ଜଣାଇ ରହୁଛି ।
ଦେଖାହେବ ଖୁବ୍ ନିକଟରେ ତା' ସହିତ ।







# ରହିଗଲା କବିତାର ପ୍ରିୟଧାଡ଼ି

**ଅଧ୍ୟାପକ ବିଶ୍ୱରଞ୍ଜନ**

**"ବାଲୁଗାଁର ଚିତ୍ରପଟ ଆକାଶର ଜହ୍ନ ପରି ବିରାଟ ବିସ୍ମୟ**
**ଏକତ୍ରିତ କରିଥିଲା ମହାମହା ମନୀଷୀଙ୍କୁ ପରମ ସମୟ।"**

ସେହି ସମୟର ସ୍ୱାକ୍ଷର ବହନ କରି କବି ଗୋଦାବରୀଶ, କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ପରମ୍ପରା ପ୍ରତିଷ୍ଠିତ ଗାଁ'ରେ ଜନ୍ମ ନେଇଥିଲେ କବି **ତପନ ପଟ୍ଟନାୟକ।** ସେ କେବଳ କବିତା ଲେଖୁ ନ ଥିଲେ, ସେ କବିତାରେ ହିଁ ବଞ୍ଚୁଥିଲେ। ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ହାତରେ କବିତାର ପାଣ୍ଡୁଲିପି ଧରି ମୃତ୍ୟୁ ସହିତ ସଂଘର୍ଷ କରୁଥିଲେ। କବିତାର ଶକ୍ତି ବଳରେ ସେ କର୍କଟ ଭଳି ଦୁଃସାଧ ବ୍ୟାଧିକୁ ପରାସ୍ତ କରିଥିଲେ। ମାତ୍ର ତାଙ୍କ କବିତା-ପ୍ରେମ ପ୍ରତି ଅସହିଷ୍ଣୁ ମୃତ୍ୟୁଦୂତ ତାଙ୍କ ପିଛା ଛାଡ଼ିବାକୁ ଯେମିତି ପ୍ରସ୍ତୁତ ନ ଥିଲା। କର୍କଟ ପରେ କିଡ୍‌ନି ସମସ୍ୟା। ସପ୍ତାହିକ ତିନିଥର ଡାଏଲିସିସ୍ - ତଥାପି ଲେଖା ଚାଲିଥିଲା। ନିଜର 'ସମନ୍ୱୟ' ପ୍ରକାଶନ ସଂସ୍ଥା ପକ୍ଷରୁ ବହୁ ନୂତନ ଓ ପ୍ରବୀଣ ଲେଖକ ଲେଖିକାଙ୍କ ପୁସ୍ତକ ପ୍ରକାଶର ଧାରା ମଧ୍ୟ ଅବ୍ୟାହତ ରହିଥିଲା, ଏକମାତ୍ର ପୁତ୍ର ସନ୍ଦୀପର ସହଯୋଗ ବଳରେ।

ସରକାରୀ ଆକ୍ରୋଶ ଓ ଅବହେଳାର ଶିକାର ହୋଇ ସେ ଶେଷ ପର୍ଯ୍ୟନ୍ତ ନିଜର ନ୍ୟାଯ୍ୟ ପେନ୍‌ସନ୍ ପ୍ରାପ୍ୟ ପାଇ ପାଉ ନଥିଲେ। ମାତ୍ର ଆର୍ଥିକ ଅସ୍ୱଚ୍ଛଳତା, ଦୁରାରୋଗ୍ୟ ବ୍ୟାଧି ସତ୍ତ୍ୱେ ତପନଙ୍କର ଦୃଢ଼ ମନୋବଳ, ସାହିତ୍ୟିକ ସହୃଦୟତା ଏବଂ ଅନ୍ତର୍ନିହିତ କବିତ୍ୱରେ କୌଣସି ମଳିନତା ଦେଖା ଦେଇ ନଥିଲା। ସେ ପୁରୀରେ ରହୁଥିବାବେଳେ ତାଙ୍କ ଭଡ଼ାଘରକୁ ମୁଁ ଯାଏ ପ୍ରତିଥର ପୁରୀ ଗଲାବେଳେ ଏବଂ ଏଇ ଭୁବନେଶ୍ୱରରେ ଥିବା ଭଡ଼ାଘରକୁ ନିୟମିତ ଅନାୟାସରେ ମୋର ଯିବା ଆସିବା ଲାଗି ରହିଥିଲା। ଭଡ଼ାଘରର ସୀମିତ ପରିସର ଭିତରେ ଯେଉଁଆଡ଼େ ଦେଖିବ ଖାଲି ବହି ଆଉ ବହି। ଆତ୍ମଜୀବନୀ ଲେଖା ପ୍ରାୟ ସରି ଆସିଥିଲା, ମାତ୍ର ତା'ର ପ୍ରକାଶିତ ରୂପକୁ ଦେଖିବାକୁ ସେ ଆଉ ରହିଲେ ନାହିଁ।

ମୋର ସୌଭାଗ୍ୟ ଯେ, ସେ ମୋର ଲେଖାର ଥିଲେ ଜଣେ ପ୍ରିୟ ପାଠକ ଓ ମୁଗ୍ଧ ପ୍ରଶଂସକ। ଅନ୍ୟ ଯୁବ ପ୍ରକାଶକଙ୍କ ଭଳି ସେ କୌଣସି ଅର୍ଥ ଦାବୀ ନକରି ନିଜ ଆଗ୍ରହରେ ସେ ମୋର ପ୍ରାୟ ୪/୫ଟି ପୁସ୍ତକ ପ୍ରକାଶ କରିଛନ୍ତି। ମୋର



ଏକପଦୀ କବିତାକୁ ନେଇ ଗତବର୍ଷ ପ୍ରକାଶିତ **'ପକ୍ଷୀଗାନ'** ପୁସ୍ତକଟିକୁ ମୁଁ ତାଙ୍କୁ ଉତ୍ସର୍ଗ କରିଥିଲି। ଲେଖିଥିଲି – **"ଚିଲିକା କୂଳରେ କବିଟିଏ, ଶୁଣି ଶୁଣି ପକ୍ଷୀଗାନ, କବିତାର କରେ ଜୟଗାନ। କବିତାରେ ବଞ୍ଚିଛି ଜୀବନ। କବିବନ୍ଧୁ ତପନ ପଟ୍ଟନାୟକଙ୍କୁ ମୋର ଶ୍ରଦ୍ଧାର ସୁମନ 'ପକ୍ଷୀଗାନ' କରୁଛି ଅର୍ପଣ।"** ହାତକୁ ତାଙ୍କର ବହିଟି ବଢ଼େଇ ଦେଲାବେଳେ, ଏହାର ଉତ୍ସର୍ଗ ଲିପି ପଢ଼ି ଆଖି ତାଙ୍କର ଲୁହ ଛଳଛଳ ହୋଇଯାଇଥିଲା।

ଦୀର୍ଘ ପାଞ୍ଚ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ତପନ କବିତା ଲେଖିଛନ୍ତି। ଚିଲିକାର ନୀଳ ଜଳରାଶି ଭଳି ତପନଙ୍କ ଆବେଗ ଆଚ୍ଛନ୍ନ କବି ପ୍ରାଣଟିରେ ଚିରସ୍ରୋତା କବିତାର ପ୍ରବାହ। କୌଣସି ପାର୍ଥିବ ପୁରସ୍କାର, ପ୍ରତିଷ୍ଠା, ପ୍ରତ୍ୟାଶା ଓ ପ୍ରୟାସର ବହୁଦୂରରେ ରହି ସେ କେବଳ କବିତାରେ ହିଁ ବଞ୍ଚିବାକୁ ଚାହିଁଥିଲେ ଏବଂ ବଞ୍ଚିଥିଲେ ମଧ୍ୟ। ଲେଖିଥିଲେ ସେ – **"କାହା ପାଇଁ ଲେଖିଲି ମୁଁ / କିଏ ବା ପଢ଼ିଲା / କିଏ ପଢ଼ିବାକୁ ଅଛି / କିଛି ମୁଁ ଜାଣିନି / କେବଳ ଚାଲିଛି ଲେଖି / କାହା କଥା କିଛି ମୁଁ ଶୁଣିନି।"** (କବିତା – 'ଆଲୋକ ଅନ୍ଧାର')

କବି କ'ଣ ସତରେ କିଛି ଶୁଣେ ? ମିଶାଣ-ଫେଡ଼ାଣ-ଗୁଣନ-ହରଣର ଗତାନୁଗତିକ ଜୀବନ ଗଣିତରେ ନିଜକୁ ଗୁଣେ ? ତା'ର ଜୀବନ ହେଉଛି କବି ରମାକାନ୍ତ ରଥଙ୍କ ଭାଷାରେ 'ସରଳ ହୃଦଗଣିତ'। ହୃଦୟର ଜୀବନରେ ସେ ନିଜକୁ କଷି ଚାଲିଥାଏ। ପରସ୍ତ ପରସ୍ତ କରି ପରଷି ଚାଲିଥାଏ ପ୍ରତିକ୍ଷଣ। ଜୀବନର ଏହି ପ୍ରଦକ୍ଷିଣରେ କବିର ପଥ ପରିକ୍ରମା। ଅନ୍ୟ କୌଣସି ବାଟୋଇର ଅପେକ୍ଷା ନ ରଖି ଧୂଳି ଧୂସର ହୋଇ ସେ ବାଟ ଚାଲୁଥାଏ। ଖାଲି ଚାଲୁଥାଏ। ତା'ର ସହାୟ ପୃଥିବୀର ମାଟି, ମୁଣ୍ଡ ଉପରର ଆକାଶ, ତାରା, ଜହ୍ନ, ଖରା, ମେଘ, କୁହୁଡ଼ି, କାକର – ଯିଏକି ସବୁ ସମୟରେ ସବୁଜ କରିଦିଏ ତାକୁ। ସ୍ୱପ୍ନ ଭରିଦିଏ ତା' ଧୂସର ଆଖିରେ। ସେଇ ଧୂଳିଆ ଚାହାଣିରେ ସେ ନିରେଖି ଦେଖୁଥାଏ ଆଖି ପାଉ ନ ଥିବା ଜଗତ, ଦିଗନ୍ତ ଆରପାରିର ନଈ। ଏକୁଟିଆ ଠିଆ ହୋଇଥିବା ସୁନ୍ଦର ନଈପଠାର ତାଳବଣ, ମଶାଣିର ଭଙ୍ଗା ସମାଧି, ଦୂର ଓ ଅଦୂରର ବର୍ତ୍ତୁଳ ବାଲିବନ୍ଧ। ଏ ଜନ୍ମର, କେତେ ଜନ୍ମର ପ୍ରତ୍ୟୟ, ପ୍ରତିଶ୍ରୁତିକୁ ସାଙ୍ଗରେ ଧରି ମୁହୂର୍ତ୍ତର ପ୍ରତି ପ୍ରସ୍ତକୁ ସେ ପାରି ହେଉଥାଏ କାଳରୁ କାଳ, ଶତାବ୍ଦୀରୁ ଶତାବ୍ଦୀ, ଅନନ୍ତ ଅନାଦି।





ମୁଁ ଏବେ ବସି ପଢୁଛି ସେଇ ପ୍ରିୟ କବିବନ୍ଧୁଟିର କବିତା। ମୋ ବହି ଥାକରେ ଭର୍ତ୍ତି ହୋଇ ରହିଛି ତାଙ୍କର ଯେତେ ସବୁ କବିତା ବହି। **"ବିସ୍ତୃତ ଏ ପୃଥିବୀକୁ କବିତାର ପ୍ରିୟ ଧାଡ଼ିଟିଏ ଦେଇଗଲା ପ୍ରାଣଭରା ସ୍ନେହସିକ୍ତ ମୃଦୁ ଆଲିଙ୍ଗନ। କହିଗଲା ମଣିଷକୁ ପୃଥିବୀରେ ଆଉ କିଛି ନାହିଁ। ଖାଲି ସତ ଭଲପାଇବାର ଏଇ ସ୍ନିଗ୍ଧ ଆବେଦନ"**। କବିର କବିତାର ପ୍ରିୟଧାଡ଼ି। ମନେ ମନେ ଗୁଣୁଗୁଣଉଛି। ମୃତ୍ୟୁଛାୟା ସିନା କବଳିତ କଲା କବିର କାୟା-କଳେବରକୁ, ହେଲେ କବିତାର ମୃତ୍ୟୁ କାହିଁ? କବିର ବି ବିଦାୟ କାହିଁ? ସେ ତ ରହିଗଲା ସବୁଦିନ ପାଇଁ ତା'ର କବିତାର ପ୍ରିୟ ଧାଡ଼ିମାନଙ୍କରେ।

ଶେଷରେ ସେଇ କବିଙ୍କ କବିତାଗାନ କରି ମୁଁ ତାଙ୍କ ପ୍ରତି ମୋର ଶ୍ରଦ୍ଧାର୍ଘ୍ୟ ଅର୍ପଣ କରୁଛି। **"ପ୍ରଦକ୍ଷିଣ ପ୍ରତିପ୍ରସ୍ତ"**ରେ କବି ତପନ ପଟ୍ଟନାୟକ -

ଏ ଜନ୍ମର ଯାତ୍ରା ମୋର ସରିଗଲେ ଆନ୍ଧାରି ଗୁହାରୁ
କେଉଁଠିକି ଚାଲିଯିବି ଏକଥା ତ କିଛି ଜଣା ନାହିଁ
ଯେତେ ଯାହା ସାଇତିଛି ଗୃଧ୍ର ପରି ଏ ଜନ୍ମ ଯାତ୍ରାରେ
ଲୋଭ ତ ବଳିଛି ମୋର କେତେ କ'ଣ ଅଧିକ ମାତ୍ରାରେ।
ଯାହା ମୁଁ ପାଇଛି ଦୁଃଖ, ଦୁଃଖ ବୋଲି କହି ନାହିଁ କେବେ
ଏମିତି ବିଷୟାସକ୍ତ ଗୋପର ଚଟାଣ ଦେହେ ଲିପାହେଲା ପରି
ସାମଗ୍ରିକ ଅନ୍ଧସ୍ୱର ଆବୋରିବ ସତ୍ତା ଓ ଚେତନା
ଜାଣିଚ ଜୀବନ ହେବ ଆଉ ଦିନେ ଅନାବନା, ଅରମା, ଅଗନା।
ଏତେ ବିଫଳତା ସତ୍ତ୍ୱେ ବାରମ୍ବାର ପ୍ରଚେଷ୍ଟା ଅନେକ
ଅଖଣ୍ଡ ଦୀପର ଶିଖା ନିଷ୍ଠା ସହ ଜାଳି ରଖିବାକୁ
ନିଜର ପ୍ରସ୍ଥାନ ଶବ୍ଦ ଶୁଭିବ ତ ଆଉ ଟିକେ ପରେ
ତଥାପି ମୁଁ ମୁହୂର୍ତ୍ତଟେ ରହିଯିବି ଦୁର୍ନିବାର ଇଚ୍ଛାଟିଏ ଜଳେ।
ପ୍ରଦକ୍ଷିଣ ପ୍ରତିପ୍ରସ୍ତ ଜୀବନରୁ ଜୀବନ ପର୍ଯ୍ୟନ୍ତ
ପ୍ରଚଣ୍ଡ ଏ ଆସକ୍ତିର ମୋ ଭିତରେ ଅନ୍ତହୀନ ଅନ୍ତ।







# କବି ତପନ ପଟ୍ଟନାୟକ : ଏକ ସ୍ମୃତି ତର୍ପଣ

ରବିନାରାୟଣ ସେନାପତି

ସେ ଥିଲେ ଏକାଧାରରେ ଜଣେ କବି ଏବଂ ଗୀତିକବି । ଜଣେ କୋମଳ ହୃଦୟର ମଣିଷ । ଜଣେ ସରଳ, ଅମାୟିକ ଏବଂ ବନ୍ଧୁବତ୍ସଳ ବ୍ୟକ୍ତି । ତାଙ୍କ ସଂପର୍କରେ ଯେଉଁମାନେ ଆସିଛନ୍ତି, ସେମାନଙ୍କ ପାଇଁ ସେ ଅବିସ୍ମରଣୀୟ । ତାଙ୍କ ସହିତ କେତେଥର ସାକ୍ଷାତ୍ ହୋଇଛି । ପ୍ରତିଟି ସାକ୍ଷାତ୍‌ରେ ମୁଁ ଅନୁଭବ କରିଛି ତାଙ୍କର ଆନ୍ତରିକ ସୌହାର୍ଦ୍ଦ୍ୟ ଏବଂ ସ୍ନେହ ।

ମୁଁ ରାଜ୍ୟ ନିର୍ବାଚନ କମିଶନର ଥିଲାବେଳେ ସେ ଥରେ ମୋତେ ଅଫିସରେ ଆସି ଦେଖା କରିଥିଲେ । ତାଙ୍କର ସ୍ୱାସ୍ଥ୍ୟ ସମସ୍ୟା ଦେଖା ଦେଇଥିଲା । ମାତ୍ର ମନ ଏବଂ ହୃଦୟ ଥିଲା କବି ସୁଲଭ ଦରଦୀ । ମୋର ଗୀତ ରେଡ଼ିଓରେ ବାଜିଲେ ସେ ଶୁଣିଲା ପରେ ମୋ ପାଖକୁ ଫୋନ୍‌ରେ କଥା ହୁଅନ୍ତି । ଏହା ତାଙ୍କର ସାରସ୍ୱତ ସଂପ୍ରୀତିର ପରିଚୟ ଦିଏ । ତାଙ୍କର ଶରୀର ଅସୁସ୍ଥ ଥିଲା । ସମସ୍ତ ଚିକିତ୍ସା ସତ୍ତ୍ୱେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମାତ୍ର ଓଡ଼ିଶାର ସାରସ୍ୱତ ଜଗତରେ ଏକ ଅମ୍ଳାନ କୀର୍ତ୍ତିର ଅଧିକାରୀ ହୋଇ ସେ ଚିରକାଳ ଅମର ହୋଇ ରହିବେ ।

ତାଙ୍କର ତିରୋଧାନରେ ମୁଁ ଗଭୀର ଭାବେ ମର୍ମାହତ । ତାଙ୍କର ଅମର ଆତ୍ମା ପ୍ରତି ମୋର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ନିବେଦନ କରିବା ସହିତ ତାଙ୍କର ଶୋକସନ୍ତପ୍ତ ପରିବାରକୁ ସମବେଦନା ଜଣାଉଛି ।

*ଆଇ.ଏ.ଏସ୍. ଅବସରପ୍ରାପ୍ତ*







# ପୁନର୍ବାର କବି ହୋଇ ଏ ପୃଥିବୀରେ ଜନ୍ମ ନିଅନ୍ତୁ ।

**ମମତା ଦାଶ**

ଯେତେ ବେଳେ ହଠାତ ଜଣେ ପରିଚିତ ବ୍ୟକ୍ତି ଆମ ଗହଣରୁ ବାହାରି ଯାଇ କେଉଁ ଅଜଣା ଜଗତକୁ ଚାଲି ଯାଏ, ତାର ଅନୁପସ୍ଥିତି ଆମ ଅନ୍ତର ଭିତରେ ଜ୍ୱଳନ ସୃଷ୍ଟି କରେ ।ଭାରି ଆକୁଳ ଲାଗେ ।ଉପସ୍ଥିତ ଥିବା ବେଳେ ଆମର ମନେ ନଥାଏ ଯେ ଏପରି କିଛି ଦିନେ ଘଟି ପାରେ ।ତେଣୁ ମୁ ଟିକେ ସଚେତନ ହୁଏ ।

ବିଶ୍ୱାସ ହେଉନି କବି ତପନ ପଟନାୟକ ଆଉ ନାହାନ୍ତି ।ଆଉ ତାଙ୍କୁ ଦେଖି ହେବନି କି କିଛି ଶ୍ରଦ୍ଧାପୂର୍ଣ କଥା ତାଙ୍କୁ କହି ହେବନି ।

ଅନେକ ବର୍ଷ ହେବ ସେ ମୋର ଜଣା ଶୁଣା ନାଁ ଟିଏ, କବିତା ମାଧ୍ୟମ ରେ । ତାଙ୍କର କବିତା ସବୁ ପ୍ରତିଷ୍ଠିତ ପତ୍ରିକାରେ ପ୍ରକାଶିତ ହୁଏ । ମୁଁ ସଦାବେଳେ ପଢେ । ତାଙ୍କର କବିତା ମୋତେ ଭଲ ଲାଗେ । ସ୍ୱଷ୍ଟ ଅଭିବ୍ୟକ୍ତି, ଦେଖାଇ ହେବାର କିଛି ନଥାଏ । ଆଡମ୍ବର ନଥାଏ । ସେ ମଣିଷ ବି ସେମିତି ଥିଲେ । ମୁଁ ତାଙ୍କୁ ଦେଖିଛି ସଭା ସମିତି ରେ । ଏବେ ଅସୁସ୍ଥ ହେବାରୁ ଆଉ ବେଶୀ ଆସୁ ନଥିଲେ । ତାଙ୍କର ମୁହଁରେ ଏପରି କିଛି ଥାଏ ମନେ ହୁଏ ସେଜଣେ ଭଲ ପାଇବାର ମଣିଷ । ସମସ୍ତଙ୍କୁ ସାରା ସୃଷ୍ଟିକୁ ଆଦର କରିବା ତାଙ୍କର ଉଦ୍ଦେଶ୍ୟ । ସେ ଓଡିଶା ର ସଂସ୍କୃତିକୁ ଭଲ ପାଉଥିଲେ, ସେ ନାଟକ ସହିତ ସମ୍ପୃକ୍ତ ଥିଲେ । ମୁଁ ଶୁଣିଚି ସେ ଭାରି ଅଭିମାନୀ । କାହାଠାରୁ କିଛି ଦାବୀ କରନ୍ତି ନାହିଁ, ଭିତରେ ଭିତରେ କିନ୍ତୁ ସ୍ନେହ ଟିକେ ଚାହାନ୍ତି । କିଏ ଦେଲେ କଗୁବ ଖୁସି ହୁଅନ୍ତି । ନଦେଲେ ବି ତାଙ୍କର କ୍ଷୋଭ ନଥାଏ ଆକ୍ରୋଶ ନଥାଏ । ସେ କେବେ ପୁରସ୍କାର ବା ସ୍ୱୀକୃତି ପାଇଁ ଭାବି ବି ନଥିଲେ । ସାହିତ୍ୟ ର ଜୀବନ ବଂଚୁଥିଲେ । ଏଭଳି ଲିକଙ୍କର ସଂଖ୍ୟା ଧୀରେରେ ଧୀରେ କମି ଆସୁଚି । ବଡ ଦୁଃଖ ର କଥା ।

ତାଙ୍କୁ ଅନେକ ସାହିତ୍ୟିକ ଭଲ ପାଉଥିଲେ ।ଏଭଳି ଜଣେ ବ୍ୟକ୍ତିତ୍ୱଙ୍କୁ କିଏ ଭୁଲି ପାରିବ ?

ମୋର ବ୍ୟକ୍ତିଗତ ଅବସୋସ ହେଉଚି । ସେ ମୋ ଘର ପାଖରେ ରହିଥିଲେ, ସେଇଠି ଶେଷ ନିଶ୍ୱାସ ତ୍ୟାଗ କଲେ, ରାଜକିଶୋର ଦାଶ ଙ୍କର ଏଥେନା ଅଫିସ



ର ତଳ ମହଲାରେ ରହୁଥିଲେ। ମୁଁ ସେଇ ଅଫିସକୁ ବହୁଥାର ଯାଇଛି ବହି ଉନ୍ମୋଚନ ଉତ୍ସବ ରେ। କିନ୍ତୁ ତାଙ୍କୁ ଦେଖିବାକୁ ଯାଇନି। ସେ ଚାଲି ଯିବାର ପୂର୍ବ ଦିନ ଅପରାହ୍ନ ରେ ଆମ ଘରେ କବି ସୂର୍ଯ୍ୟ ମିଶ୍ରଙ୍କଠାରୁ ଜାଣିଲି ଯେ ସେ ସେଠାରେ ଏବେବି ଅସୁସ୍ଥ ଅବସ୍ଥା ରେ ଅଛନ୍ତି। ଗୋଟିଏ ଝଲକ ରେ ମନେ ହୋଇ ଥିଲା ଏଥର ଟିକେ ତାଙ୍କୁ ଦେଖି ଆସିବି। ଆଶ୍ଚର୍ଯ୍ୟ ର କଥା ସେଇ ରାତିରେ ବି ସେ ଚାଲି ଗଲେ। ମୋର ଏ ଗ୍ଲାନି ସଦା ବେଳ ପାଇଁ ରହିଲା। ଭଲ ବ୍ୟକ୍ତି କୁ ତା ଜୀବନ ମୂଲ୍ୟ ସେ ଥିବା ବେଳେ ଦେବା କେତେ ବଡ କଥା। ମୁଁ ସଦାବେଳେ ଏ କାମ କରି ପାରିନାହିଁ।

ସେ କଷ୍ଟ ରେ ଥିଲେ, ଏବେ ଶାନ୍ତି ରେ ଥିବେ। ତାଙ୍କ ଆତ୍ମା ର ଶୁଭ ଗତି ହେଉ, ସେ ପୁନର୍ବାର କବି ହୋଇ ଏ ପୃଥିବୀ ରେ ଜନ୍ମ ନିଅନ୍ତୁ। ଆଜି ଦିନରେ ମୋର ତାଙ୍କର କାବ୍ୟାତ୍ମା ଓ ବ୍ୟକ୍ତିତ୍ୱକୁ ନମସ୍କାର କରୁଛି।



## ଅଜୟ ପ୍ରଧାନ

ତପନ ଭାଇ ! ମଣିଷ ହିସାବରେ ଦଣ୍ଡବତ, କବି ଭାବରେ ମୋର ନମସ୍କାର, ଗୀତିକାରୀତା ପାଇଁ ତମକୁ ପ୍ରଣାମ।







# ଶ୍ରଦ୍ଧା ସ୍ନେହ ଶ୍ରଦ୍ଧାଞ୍ଜଳି

**ଅମରେଶ ପଟ୍ଟନାୟକ**

ଗୋଟିଏ ହାଫ୍‌ପ୍ୟାଣ୍ଟ ହାୱାଇନ୍ ପିନ୍ଧା ଚାରିଫୁଟ୍ କିଛି ଇଞ୍ଚ ଉଚ୍ଚତାର ପିଲା । ବୋଧେ ବାଲୁଗାଁ । ଚିଲିକା ପଟର । ନାଁ ଡକାହେଲା ମଞ୍ଚ ଉପରୁ । ...ମଞ୍ଚରେ ପଢ଼ିଲା କବିତା । ଗୀତିକବିତା । ଦର୍ଶକ ତାଳି ମାରିଲେ । ଦେଖିଲୁ ଡକ୍ଟର ମହତାବଙ୍କ ବ୍ୟକ୍ତିତ୍ୱ ନିକଟରେ ବେଶ୍ ଆଦୃତ ସେ । ସେ ତପନ ପଟ୍ଟନାୟକ । କୁଞ୍ଚ କୁଞ୍ଚ କେଶ, ହସହସ ସରଳ ସାଧାରଣ । ହଁ ବୋଧେ ଷାଠିଏରୁ ଅଧିକ ବର୍ଷ ତଳର କଥା । ପରେ ପରେ ଝଙ୍କାରରେ ପ୍ରକାଶ ପାଏ ତାଙ୍କ କବିତା । ଗୋଟିକ ପରେ ଗୋଟିଏ ବହି ।

ମଧ୍ୟବିତ୍ତର ଜୀବନ ସଂଗ୍ରାମ । ତା'ମଧ୍ୟରେ ସାହିତ୍ୟ । ପୁଣି କବିତା । ପୁଣି ଯଦି ତା' ଛନ୍ଦ କବିତା । ସଂସାର ଚଳାଇବା, ତା' ମଧ୍ୟରେ ତଥା କଥିତ ରଥୀ ମହାରଥୀଙ୍କ ଠାରୁ ନୂଆ ପିଢ଼ିର ସଂଭ୍ରାନ୍ତମାନଙ୍କ ସଙ୍ଗେ କାନ୍ଧ ମିଳାଇ ଚାଲିବା । ସେଥିପାଇଁ ବୋଧେ ଥିଲାବେଳେ ବଞ୍ଚି ରହିବାର ଅଟଳ ସଂଗ୍ରାମ ବେଳେ ଆମେ ସମସ୍ତେ ଯଥା ସମ୍ଭବ ନିରାପଦ ଦୂରତ୍ୱରେ ନିଜ ନିଜ ଚଉକି ତିଆରିରେ ମଗ୍ନ ରହୁ । ଏବଂ ଗଲା ପରେ ବୋଧେ ଗୋଟିଏ ବିପଦ ଗଲା ଭାବି ଶୋକାନଳରେ ଶିହରୁ ଥାଉ ।

ଏସବୁ ଏପରି ଲେଖିବାର ଧୃଷ୍ଟତାର ଅନେକ କାରଣ ମଧ୍ୟରୁ ଏଇ ଅଳ୍ପ ଦିନ ତଳେ ଭିନ୍ନ ଧରଣର ହୁସେନ୍ ରବି ଗାନ୍ଧୀ ଏବଂ ଏବେ ଆଜି ବନ୍ଧୁ ତପନଙ୍କୁ ଆଗ ଆଗ ଚାଲିଯିବା ପୂର୍ବାପରର ପରିସ୍ଥିତି ! ପରିବେଶ ! ଏ ଦୋଷରେ ଅଳ୍ପ ବହୁତେ ମୁଁ ମଧ୍ୟ ଦୋଷୀ ।

ଆପାତତଃ ଏତିକି ଥାଉ । ଯଥାସମ୍ଭବ କବି ଗୀତିକାର ଅନାବିଳ ବନ୍ଧୁ ତପନଙ୍କ ପ୍ରକାଶିତ ଅପ୍ରକାଶିତ କୃତି ଗ୍ରନ୍ଥାୟନ ବିଷୟ ଯଦି ଚିନ୍ତା କରି କିଛି କରାଯାଇପାରେ, ନିରପେକ୍ଷ ଭାବରେ ଓଡ଼ିଶା ସାହିତ୍ୟ ଏକାଡେମୀ ଅନ୍ତତଃ ସମ୍ବର୍ଦ୍ଧନା ଜଣାଏ । ଆପାତତଃ ଗଭୀର ଶ୍ରଦ୍ଧା ସ୍ନେହ ଶ୍ରଦ୍ଧାଞ୍ଜଳି ... ।





# ଶୋକର କବିତା

କମଳାକାନ୍ତ ପଣ୍ଡା

ତମେ ଏମିତି ଏକ ଜାହାଜ
ଆଗେଇ ଯାଅ
ଢେଉ ହେଉ କି ସୁଅ
ସ୍ଥିର ଆଉ ଉଦାର ଚିତ୍ତରେ
ସମସ୍ତଙ୍କୁ କର ଆପଣାର।

କ୍ଷତାକ୍ତ ହେଲେ ଜଳଜୀବ
ଆଖିରେ ଜକାଏ ଲୁହ
ତମ ଅଙ୍ଗେ ପିଟିହେଲେ ଉଡ଼ା
ଚଢ଼େଇଟେ
ହୃଦୟେ ଉଠଇ କୋହ।

ଦୂରରୁ ଦେଖିଲେ
ହସ ଉବୁକାଇ
ପାଖକୁ ଆସ ଯେ ମାଡ଼ି
ଅନ୍ତର ତୁମ ନିର୍ମଳ ଆଭାରେ
ସଭିଙ୍କୁ ସ୍ପନ୍ଦିତ କରେ।

ତୁମ ଚିନ୍ତା, ଚେତନାରେ
ଲେଖା ଓ ଶବ୍ଦରେ
ନଥାଏ ବୌଦ୍ଧିକତାର ଛାପ
ତୁମକୁ ଝୁରିବ ପରବର୍ତ୍ତୀ ପିଢ଼ି
ଆଜି କାନ୍ଦେ ଉତ୍କଳ ଜନନୀ।

ବନ୍ଧୁ!
ତୁମ ବିନା ବଞ୍ଚିବାକୁ ହେବ
କୃତକୃତ ଭାଗ୍ୟ ନେଇ
କେତେ ଦିନ, କେହି ପାରିବେନି
କହି!
ଯଉଠି ବି ଥାଅ
ନିଶ୍ଚିତ ଆସିବ
ବସନ୍ତରେ କୁହୁ ହୋଇ।

ବି:ଦ୍ର. କୃତକୃତ - ନିର୍ଦ୍ଦୟ
ମୋ : ୯୪୩୭୩୯୦୦୦୩









# ତମେ ଅବିଦାୟୀ
# ହ୍ରଦକୂଳୀନ ହେ କୁଳୀନ-କୁଳାୟୀ !

**ଗିରିଜା ବଳିଆରସିଂହ**

ଛଂଦବଂଧନର ଛଳଛଳ ଛତ୍ରକାର, ହୃଦ୍ୟ ହ୍ରଦକବି : ତପନ ପଟ୍ଟନାୟକ ।

୧୯୬୫ ମସିହାରୁ ଏକ ଗହନ ଗଭୀର ଗୀତିଉଚ୍ଛଳ ଗିରିପ୍ରପାତର ଗୈରିକ ଗତିରେ, ବହୁ ବାଂକ, ବହୁ ବୁଲାଣିରେ, ଆତ୍ମପ୍ରକଟିତ ତାଂକ କ୍ରମାଗତ କାବ୍ୟଧାରା । ନାହିଁ କେବଳ ସେ ଧାରାର ଧରିତ୍ରୀରେ ଧ୍ରୁବପଦୀ ଗତି, ଅଛି ମଧ୍ୟ ସଂଗତ ସଂଗୀତମୟ ସ୍ୱତଃସଂକ୍ରମଣଶୀଳ ସଘନ ସଂଗତି - ଆଉ ଏଥି ସହ ଅଛି ଏକ ଅବ୍ୟାହତିହୀନ ବେଗ-ଆବେଗର ଅଭ୍ରଂକଷ ଅବଗତି । କିଂଚିତ୍କର କିତାବୀତତ୍ତ୍ୱର କ୍ଲାଂତିକର କସରତ୍, ଉତୁରାକୁତୁରା ଉଧାରକରା ଆପାତ-ଆଧୁନିକତାର ଆଖିବୁଜା ଆତସବାଜିରେ ଅସହାୟ ଅଂଧାରକଣାଟେ ନ ହୋଇ - ନାନା ନିଦହଜା ନିଦା ନିଦାଘକାଳକ୍ରାଂତି କଟାଇ କଟାଇ – ତାଂକ କାରୁଣିକ କାବ୍ୟାତ୍ମା ତେଣୁ କ୍ରମପରିଧିମୟ ଚଟୁଳ ଚକ୍ରରେଖାଟିମାନ କାଟିଆସିଛି ନିଜ କଂପନଶୀଳ କେଂଦ୍ରବିଂଦୁଟିର ଚାରିପଟେ ... ନିଜ ପାଇଁ ନିର୍ବାଚିନେଇଛି ଅରାଏ ଆତ୍ମବିଶ୍ୱାସର ଅଭୀଷ୍ଟ ଅଭୟାରଣ୍ୟ । ସ୍ୱଭାବତଃ, ଏହି କାରଣରୁ ହିଁ ଏକ ସ୍ୱତଂତ୍ର ସୃଜନଶ୍ରେଣୀର ସମାଦୃତ ଶିଷ୍ଟବିଶିଷ୍ଟ ସଦାପ୍ରିୟକବି ସେ ।

ତାଂକ କୋମଳଗାଂଧାରୀ କାବ୍ୟପ୍ରବୃତ୍ତିର ଦୁଇ ପ୍ରମୁଖ ପ୍ରବାହ : ପ୍ରକୃତି ଓ ପ୍ରେମ । ଜାଗତିକ ଜୀବନର ଜଟିଳ ଜଳ୍ପନା, ସହରୀକରଣୋତ୍ତର ସାବତ ସଭ୍ୟତାର ସ୍ୱରଶବ୍ଦ ସଂଯୋଜନା, ବସ୍ତୁବୁଭୁକ୍ଷିତ ବୈମାତ୍ରେୟ ବୈକଲ୍ୟର ବିବିଧ ବୈଚିତ୍ର୍ୟମୟ ବ୍ୟଂଜନାଠାରୁ, ବେଜାୟ ବିଗତଦିନରୁ ହିଁ , ବେଶ୍ ବୀତସ୍ପୃହ ବ୍ୟବଧାନ ବଜାୟ ରଖିଆସିଛି ତାଂକ ସମକାଳାଂକିତ ସହୃଦୟ କାବ୍ୟବ୍ୟକ୍ତିତ୍ୱ ।

ସପ୍ତମ ଦଶକୋତ୍ତର ଓଡ଼ିଆ କବିତାରେ, ଏକଦା ଯେଉଁ 'ଅତୀତାବର୍ତ୍ତୀ ବାର୍ତ୍ତମାନିକତା'ର ଉଚ୍ଛଳ ଅଂତଃସଲିଳସ୍ରୋତ, ଗୁପ୍ତଗଂଗୋତ୍ରୀର ଏକ ଉଲ୍ଲେଖନୀୟ ଊର୍ଦ୍ଧ୍ୱର୍କାବ୍ୟିକ ପ୍ରତ୍ୟୟର ପ୍ରତିଶ୍ରୁତି ପ୍ରଦାନ କରିଛି – ନିଟୋଳ ହୃଦୟାନଂଦର ନମ୍ର ନାଂଦୀକାର ହ୍ରଦକବି ତପନ ପଟ୍ଟନାୟକଂକ ନିତିଗୀତିଳ ନୀଳକବିତା,



ନିଶ୍ଚିତପକ୍ଷରେ, ସେଇ ପ୍ରତୁଳ ପ୍ରଗାଢ଼ ପ୍ରତିଶ୍ରୁତିର ହିଁ ଅନ୍ୟତମ ଅନନ୍ୟ ଅନୁରଣନ । ଛଂଦ, ଧ୍ୱନି, ପ୍ରଗୀତିମୟତା ସହିତ ନିଜ ନିରୀହ ସୃଜନସବୁର ଶବ୍ଦସ୍ପଂଦନକୁ ଏକ ଅର୍ଥମୟ ଅଂତର୍ଜଗତଆଡ଼େ ଆଗେଇନେବାର ଅଂତରଂଗ ଅଧିସ୍ପୃହା ତାଂକର ସେ ସମୟର ସୁକୁମାର କବିତାଗୁଡ଼ିକରେ ସ୍ପଷ୍ଟତଃ ସ୍ପର୍ଶାନୁଭୂତ । ଚାରିପଟର ଭୁଆଁବୁଲା ଭିଡ଼, ଗଳିଗଳି ଗମୁରା ଗହଳି, ଧୂଳି, ଧୂଆଁ, ଧାତବ ଧାଁଧପଡ଼ର ଫି ତୁଟାଫୁଟାରାସ୍ତା ପାରିହୋଇ ତାଂକ କୈତବରହିତ କାବ୍ୟପୁରୁଷ ସେଦିନ ଯେଉଁ ତନ୍ମୟାଭିଭୂତ ତୀର୍ଥଯାତ୍ରାର ଅନୁକୂଳ ଅୟମାରଂଭ କରିଥିଲା, ସେ ତୀର୍ଥ ତିମିରତୀର୍ଥ ବା ତୁଷାରତୀର୍ଥ ନୁହେଁ କେଭେଁ – ସେ ତୀର୍ଥ ତାଂକ ନିଜସ୍ୱ ନିବିଡ଼ ନିର୍ଜନତା ତଥା ମୁହୂର୍ତ୍ତମୁମୁକ୍ଷୁ ମୌନମଗ୍ନତାର ହିଁ ମାନସତୀର୍ଥ ।

ତପନ ପଟ୍ଟନାୟକ କୁଳୁକୁଳୁ ନୀଳହ୍ରଦକୂଳର କୁଳୀନ କବି, ବିରଳ ହୃଦୟବତ୍ତାର ଉଦୟରାଗରଂଜିତ ଅନୁରାଗୀ ଅନୁଭବୀ । ତାଂକ ଶ୍ରୁତିସୁମିଷ୍ଟ ମୃଦୁକବିତାର ପରିଚ୍ଛନ୍ନ ପଦପଂକ୍ତି ଆମକୁ ମନେପକାଇଦିଏ କେଉଁ ଜ୍ୱାଳାମତୀ ଜୀବନନଦୀର ଜୁହୁଜୁଡୁବୁଡୁ ଜଳମର୍ମର... ଭୁଲି ଯାଇଥିବା ଗୀତର ସ୍ୱର... ନଈ-ନାଆ-ନାଉରିଆର ନାଆଁ-ନଜଣା ନିଆରା ନିଛାଟିଆ ଲୁହଲହର ।

ଅପାର ଆପଣାପଣର କେଇହଜାର ପୃଷ୍ଠାର ପୃଥିବୀରେ, ଦେଇଯାଇଛଂତି ଯେ ଦରଦୀମରମୀ ଅଭିବ୍ୟକ୍ତିକାର, ଆପଣାର ଏକବାରେ ଅଳ୍ପବାକିଥିବା ଅପରିସମାପ୍ତ ଆତ୍ମକଥନକୃତିଟି : ହାତ କାଟି ଲେଖିଗଲି... କହୁଥିଲେ ତ ଏଇ ମାସଦି'ମାସକ ଆଗରୁ ଯେ - ଆଉ କହିବାର ଅଛି କେଇପର୍ଦ୍ଦ କେବଳ ।

ନା, ଆଉ କେବେହେଲେ ସେ କହିବେନି କିଛି । ମାର୍ଚ୍ଚର ମୋହରାଖରାକୁ ମହଳ କରିଦେଇ, ଯେ ମାୟାମୋହାବିଷ୍ଟ ମୂଳଚଲା ମୁଲକରୁ ଚାଲିଗଲେ ସେ ବାଲୁଗାଁ-ବାଟୁଆ, ମାତ୍ର ୭୨ ବର୍ଷ ବୟସରେ,ସାଂତରାପୁରକୁ ଲକ୍ଷ୍ୟ ରଖି ସଫେଦ୍ ଚଦରଖଂଡେ ଘୋଡ଼ିହୋଇ, ଏଇ ୧୪ରେ... ୩ଟା ୪୫ରେ ଅପରାହ୍ନର ଅପଂତରାଟାରେ, ଖଇକଉଡ଼ିଆ ଖରାର ଖଜଣା ଛାଡ଼ି ଅଜଣା ନଜଣା ତୁନ୍‌ତାନ୍ ତରାଗାଆଁଆଡ଼େ ।







# ତିରୋହିତ ତପନ

**ଡ. ହୃଷୀକେଶ ମଲ୍ଲିକ**

କବି ତପନ ପଟ୍ଟନାୟକ ଚାଲିଗଲେ। ତାଙ୍କର ଯିବାର ଥିଲା। ଯେଉଁ ଦୁରାରୋଗ୍ୟ କର୍କଟରେ ସେ ପୀଡ଼ିତ ଥିଲେ; ସେଥିରୁ ବର୍ତ୍ତିଯିବାର ଭାଗ୍ୟ ସବୁ ମଣିଷଙ୍କର ନ ଥାଏ। ସେ ନିଜେ ବି ଜାଣିଥିଲେ, ଶୀଘ୍ର ହେଉ କି ବିଳମ୍ବରେ ହେଉ ତାଙ୍କୁ ଯିବାକୁ ହେବ। ତେବେ ସେ ଯିବା ପରେ ଯାହା ଛାଡ଼ିଗଲେ ତାହା ହିଁ ଆମ ପାଇଁ ବଡ଼ କଥା। ଯେଉଁମାନେ ବର୍ଷବର୍ଷ ଧରି ତପନଙ୍କୁ ଜାଣିଥିଲେ, ତାଙ୍କ ସହ ମିଶିଥିଲେ, ସେମାନଙ୍କୁ ଆଗାମୀ ଅନେକ ଦିନ ଧରି ତପନଙ୍କୁ ମନେ ପକାଇବାକୁ ହେବ। ତପନ ନାହାନ୍ତି ବୋଲି ବିଶ୍ୱାସ ଜନ୍ମିବ ନାହିଁ ସହଜରେ। ତପନ ମନେ ପଡ଼ିଲେ ବାଲୁଗାଁ ମନେ ପଡ଼ିବ, ବାଲୁଗାଁ ମନେ ପଡ଼ିଲେ ଚିଲିକା ମନେପଡ଼ିବ, ଚିଲିକା ମନେ ପଡ଼ିଲେ ତପନଙ୍କ ଅହଂକାର ଶୂନ୍ୟ କବିତା ଛାତି ଭିତରେ ଗୁଣୁଗୁଣୁ ହେବ।

କିନ୍ତୁ ତପନ ପଟ୍ଟନାୟକଙ୍କୁ ଯେତେ ବିଳମ୍ବରେ ହେଉ ପଛକେ ଆମକୁ ଭୁଲି ଯିବାକୁ ହେବ। ଏହା ସଂସାରର ରୀତି। କାହାରି ସ୍ମୃତି ପାଇଁ ବ୍ୟକ୍ତି ମଣିଷର ମନରେ ବିଧି ଚିରଦିନ ପାଇଁ ଜାଗାଟିଏ ସଂପାଦି ନାହିଁ। ତେବେ ତପନଙ୍କୁ ଭୁଲିଯିବା ଆଗରୁ ଥରେ କଳ୍ପନାରେ ତାଙ୍କୁ ଦେଖି ନେବାକୁ ହେବ। ସାଦାସିଧା ମଣିଷଟିଏ, ସାଦାସିଧା କବିଟିଏ। କାହାକୁ ଡେଇଁ ଡାଇଁ ଆଗକୁ ଯିବାର ଆତ୍ମମ୍ଭରିତା ତାଙ୍କର ନ ଥିଲା। ବାଲୁଗାଁର ଗଛପତ୍ର, ଚଢ଼େଇ ଦଳ, ଭସାମେଘ ତାଙ୍କୁ ଚିହ୍ନି ଥିଲେ। ତାଙ୍କ ସହ କଥା ହେଇଛି ଚିଲିକା ସମୟ ଦେଖି। ସେ ଆମ ସମୟର ବହୁ କବିଙ୍କ ଭିତରେ ଜଣେ ଥିଲେ। କିନ୍ତୁ ଆମ ସମୟରେ କବିତା ଲେଖୁଥିବା ମଣିଷମାନଙ୍କ ଭିତରେ ଥିଲେ 'ଅନ୍ୟ ଜଣେ'। ସେହି ଅନନ୍ୟତାକୁ ମୁଁ ତପନଙ୍କଠାରେ ଦେଖିଛି। ମୃତ୍ୟୁର କେଇ ବର୍ଷ ପୂର୍ବରୁ ସେ ସାମାନ୍ୟ ବିଷାଦଗ୍ରସ୍ତ ଥିଲେ। 'ହଁ ଚାଲିଛି', 'ହଁ ବଞ୍ଚିଛି'ର ଜୀବନ ବଞ୍ଚୁଥିଲେ। ତାଙ୍କ କବିତାଠୁଁ ସେ ବଡ଼ ଥିଲେ। ତେଣୁ ତାଙ୍କ କବିତା ମୁଁ ଯେତେବେଳେ ପଢ଼େ ଲାଗେ ତପନ ତାଙ୍କ କବିତାଠାରୁ ବଡ଼, ନିଜ କବିତା ଠାରୁ ମହାର୍ଘ। ତାଙ୍କ ମନର କଥାକୁ ମଣିଷପଣଙ୍କୁ ଗୋଟିପଣେ ଧରି ରଖିବାକୁ ତାଙ୍କ କବିତାର ଶବ୍ଦମାନେ ଅସମର୍ଥ। ତପନ ଅମର ହେଇ ରହିବା ପାଇଁ



କେବେ ବି କବିତା ଲେଖନ୍ତି ନାହିଁ। ପୁରସ୍କାର ପାଇ 'ବିଜୟ ସ୍ତମ୍ଭ'ରେ ଠିଆ ହେଇ ଫଟୋ ପୋଜ୍ ଦେବା ଲକ୍ଷ୍ୟରେ ସେ ଧାଡ଼ିଟିଏ ବି ଲେଖନ୍ତି ନାହିଁ କେବେ ବି।

ତପନଙ୍କର ବହୁ କବିତା ମୁଁ ପଢ଼ିଛି। କିନ୍ତୁ ତପନଙ୍କ ସହ ଭେଟ ହେଲାବେଳେ, ତାଙ୍କ ସହ ଫୋନ୍‌ରେ କଥା ହେଲାବେଳେ ଲାଗିଛି – ସେ ତ ନିଜେ ସାକ୍ଷାତ୍ କବିତା। ତାଙ୍କ କବିତାର ଶବ୍ଦମାନେ ନିଶ୍ଚୟ କେତେବେଳେ ଛପା ବହିର ପୃଷ୍ଠା ଭିତରୁ ବାହାରି ତାଙ୍କୁ ଅବଲୋକି ତଟସ୍ଥ ହୋଇଥିବେ, କୃତକୃତ୍ୟ ଅନୁଭବ କରିଥିବେ। ଏପରି କବିତା ଲେଖିବାର ସୌଭାଗ୍ୟ ସବୁ କବିଙ୍କ ଭାଗ୍ୟରେ ଜୁଟେ ନାହିଁ। ଆପଣଙ୍କର ଯଦି କାନ ଅଛି, ସେ କାନ ଯଦି ଶଶାକାନ ପରି ତୀବ୍ର ତେବେ ବାଲୁଗାଁ ବାଟରେ, ଚିଲିକା କୂଳେକୂଳେ ଗଲାବେଳେ ନିକାଞ୍ଚନରେ କାନ ଡେରିବେ, ଚିଲିକାର ଢେଉ, ଚିଲିକାର ଚଢ଼େଇମାନେ ଯେଉଁ କବିତା ମନେ ରଖିଛନ୍ତି। କେତେବେଳେ ପଢ଼ି ପରସ୍ପରକୁ ଶୁଣାଉଛନ୍ତି, ସେ କବିତାର କେଇ ଅଂଶ ନିଶ୍ଚୟ ତପନଙ୍କର।

ଅନେକ ଦିନ ତଳେ ତପନଙ୍କ ଏକ କବିତା ପଢ଼ିଥିଲି। ୧୯୭୮ ମସିହା ଶେଷ ଆଡ଼କୁ ସେ କବିତାଟି ଲେଖିଥାନ୍ତି ତପନ। କବିତାର ଶୀତର୍ଷକ ଥିଲା "ଫୁଲ, ବଣ, କବିତା ଓ ସ୍ମୃତି"। କବିତାର ଗୋଟିଏ ପଂକ୍ତି ଏହିପରି ଥିଲା –

"ତମେ ଝରିଲା ମଧୁମୁଗ୍‌ଧ କବିତାଟିଏ / କେତେ ମଣିଷ ତାକୁ ମୁଖସ୍ଥ କରି / ଧରି ରଖିବା ପାଇଁ ଚାହିଁଛନ୍ତି / କାହାରି ଓଠରେ ରହି ନାଇଁ / ଆପେ ଆପେ ଝରି ଆସିଛି।"

ମନେହୁଏ, ତପନ ଯେପରି ନିଜର କବିତାକୁ ଉପଲକ୍ଷ୍ୟ କରି ଏ ପଂକ୍ତିଟି ଲେଖିଥିଲେ। ତାଙ୍କ କବିତା ଏପରି କବିତା, ଯାହାକୁ କେବଳ ନିଜ ଓଠରେ ଧରି ରଖିବାର ଆସ୍ଫାଳନ କେହି କରିପାରିବେ ନାହିଁ। ଓଠରୁ ଓଠକୁ ସେ ଝରି ଚାଲିବ, ଆମେ ଥିବା ଯାଏ, ଆମେ ଯିବା ପରେ। ଆମ ସମସ୍ତଙ୍କ ମନ ନଈରେ ସେ ତାଙ୍କ ସ୍ମୃତିର ଫରୁଆଟିକୁ କବିତାର ନୌକା କରି ଭରେଇ ଦେଇ ଯାଇଛନ୍ତି। କୋଉଠି ସେ ନୌକା ପହଞ୍ଚିବ, ତହିଁରେ ସେ ଠିକଣା ଲେଖା ନାହିଁ। ତପନ ତମେ ତିରୋହିତ। ତମ ଅସ୍ତାୟିତ ବିରତାକୁ ବନ୍ଧୁ ଭାବେ ମୋର ଶତଶତ ପ୍ରଣାମ।

ମୋ : ୯୮୫୩୨୮୭୭୫୫









# କବିତାର ଯାତ୍ରାପଥରେ ଫେରି ଆସୁଥିବା କବି ତପନ ପଟ୍ଟନାୟକ

**ଅପର୍ଣ୍ଣା ମହାନ୍ତି**

କବି ତପନ ପଟ୍ଟନାୟକ ଆଉ ନାହାଁନ୍ତି । ଏଇ ଦାରୁଣ ଖବରଟି ସତେ କି ଓଡ଼ିଶାର ସାରସ୍ୱତ ଜଗତରେ ଅଦୃଶ୍ୟ ଅଶ୍ରୁର ଅପେରା ନଈଟିଏ ବୁହାଇଦେଲା ।

ତପନ ପଟ୍ଟନାୟକଙ୍କର ମୃତ୍ୟୁ ସମ୍ବାଦଟି ଆଦୌ ଅପ୍ରତ୍ୟାଶିତ ନଥିଲା । ଦୀର୍ଘବର୍ଷ ଧରି ଦୁରାରୋଗ୍ୟ ବ୍ୟାଧିର ନିର୍ମମ ପଞ୍ଝା ଭିତରେ ଥାଇ ଜୀବନ-ମରଣର ସଂଘର୍ଷ ଭିତରେ ଥିଲେ ସେ । ତା'ରି ଭିତରେ କବିତା ସହିତ ହୃଦୟର ଆବେଗକୁ ଗୋଳେଇ ସେ ବାଣ୍ଟି ଦେଉଥିଲେ ପ୍ରିୟଜନମାନଙ୍କୁ । କାଗଜ କଲମ ତୁଳନାରେ କବିତା ଯେ ହୃଦୟର ପୃଷ୍ଠାମାନଙ୍କରେ ଅଧିକ ଲେଖା ହୋଇ ରହେ, ତପନବାବୁ ତାହା ହିଁ ସାବ୍ୟସ୍ତ କରିଦେଇଗଲେ ।

ଅଳ୍ପ କୁଞ୍ଚକୁଞ୍ଚିଆ କେଶ ଥିବା, ଅତି ଆପଣାର ଲାଗୁଥିବା ହସହସ ମିଠା ମୁହଁଟିଏ । କେବେ କେମିତି ଦେଖା ହୋଇଯାଏ ଯେତେବେଳେ ଖୁବ୍ ଆତ୍ମୀୟ ସମ୍ଭାଷଣରେ ଭରପୂର ଲାଗନ୍ତି । ଭୁବନେଶ୍ୱର ଓ କେନ୍ଦ୍ରାପଡ଼ା ଘରକୁ ଦୁଇଥର ତାଙ୍କ ପ୍ରକାଶନର ବହିସବୁ ଧରି ଆସିଛନ୍ତି କି ? ଭାଇଟିଏ ଭଉଣୀକୁ ଶଙ୍ଖୋଳିଲା ପରି ମିଠା କିଛି ନିଶ୍ଚୟ ଥିବ ହାତରେ । ଛାପିବାକୁ ପାଣ୍ଡୁଲିପିଟିଏ ମାଗିଛନ୍ତି ଆଗ୍ରହରେ । ଦେଇପାରି ନଥିବାରୁ ଅବସୋସରେ ଘାରିହେବି ନିଶ୍ଚୟ ।

ସେ ଏପରି ଜଣେ କବି ଯିଏ ଜରା, ବ୍ୟାଧି, ଶୋକକୁ ଜୀବନର ଉତ୍ସବ ପରି ଗ୍ରହଣ କରିଥିଲେ । ଶରୀର କେତେ କଷ୍ଟ ଭୋଗୁଥିଲା । ହେଲେ କେତେବେଳେ ବଂଶୀସ୍ୱନ ତ କେତେବେଳେ ଜୀବନ ସଂଗ୍ରାମର ରଣଭେରୀ ହୋଇ କବିତା ତାଙ୍କୁ ଆବୋରି ରହିଥିଲା । ଶେଷକୁ ତାଙ୍କର ପ୍ରିୟତମର କଳାବଦନକୁ ଦେଖିବା ପାଇଁ ସେ ଆଖି ବୁଜିଦେଲେ । ହେଲେ ତାଙ୍କୁ ଭଲପାଉଥିବା ମଣିଷମାନଙ୍କ ପାଇଁ କବିତାର ଯେଉଁ ଯାତ୍ରାପଥ ସେ ରଖି ଦେଇଗଲେ, ସେଇ ଯାତ୍ରାପଥ ତାଙ୍କୁ ବାରମ୍ବାର ଫେରେଇ ଆଣୁଥିବ ଆମ ସମସ୍ତଙ୍କ ପାଖକୁ । 





# ଜୀବନବୋଧର କବି ତପନ ପଟ୍ଟନାୟକ

**ବିଜୟାନନ୍ଦ ସିଂହ**

ମାଟି ପ୍ରତି ଆନ୍ତରିକତା, ଜୀବନ ପ୍ରତି ଅନୁରକ୍ତି, ପ୍ରକୃତି ପ୍ରତି ଅନୁରାଗ ହିଁ ମଣିଷକୁ ସମୟ ସମୟରେ ଶବ୍ଦମୟ କରେ। ସେହି ଶବ୍ଦ ପୁଣି ଅନ୍ୟ ମଣିଷକୁ ଭାବ ବିଭୋର କରି ଜୀବନବୋଧରେ ତଲ୍ଲୀନ କରିଦିଏ। ସେଥିପାଇଁ କବିମାନେ କାଳଜୟୀ। ଏହିପରି ଭାବାଦର୍ଶକୁ ବାନ୍ଧି ରଖିଥିବା ଜଣେ ଜୀବନବାଦୀ କବି ତପନ ପଟ୍ଟନାୟକ।

ତପନ ପଟ୍ଟନାୟକ ପ୍ରେମ ଓ ପ୍ରଣୟର କବି। ସେ ସୌନ୍ଦର୍ଯ୍ୟ ବ୍ୟାକୁଳତା ଓ ଅନୁଭବର ସାର୍ଥକ ରୂପକାର। ସେ ଥିଲେ ନୀରବ ମଣିଷ। ଯେତିକି ସମୟ ଓ ସମାଜକୁ ବୁଝିଛନ୍ତି ସେସବୁ ଭାବନାକୁ କାବ୍ୟ କବିତାରେ ପ୍ରକାଶ କରି ଅଜସ୍ର ପାଠକୀୟ ଆଦୃତି ଲାଭ କରିଛନ୍ତି। ଜୀବନ ଓ ସମାଜର ସମସ୍ୟାରେ ସେ ଜର୍ଜରିତ ହୋଇଛନ୍ତି। କିନ୍ତୁ ଦୁଃଖ ବେଦନାକୁ ଆତ୍ମସ୍ଥ କରି ସେ ଗାଇଛନ୍ତି ମନ ଓ ପ୍ରାଣର କବିତା। ତାଙ୍କ କବିତା ଏକ ନୂତନ ଶୈଳିର କବିତା। ତାଙ୍କ କବିତାଗୁଡ଼ିକରେ ଉପଲବ୍ଧ ହୁଏ ଛନ୍ଦ, ଗୀତ, ଗଦ୍ୟଛନ୍ଦ ଓ ସନେଟ୍।

ତପନ ପଟ୍ଟନାୟକ ଜଣେ ଅନନ୍ୟ ସାରସ୍ୱତ ପ୍ରତିଭା। ଭକ୍ତିଭାବ, ଆତୁର ଭାବ ସର୍ବୋପରି ଜଗନ୍ନାଥ ଚେତନାରେ ବିଭୋର ହୋଇ ସେ ଯେଉଁ ଭକ୍ତିଭାବପୂର୍ଣ୍ଣ କବିତା ନିର୍ମାଣ କରିଛନ୍ତି ତାହା ପାଠକ ବା ସ୍ରୋତାଙ୍କୁ ଈଶ୍ୱରମନସ୍କ କରାଇଦିଏ। କବିଙ୍କ ଭାଷାରେ:-

"ମୁଁ ଆସିଛି ଦେଖି ମୋ କଳା ବଦନକୁ<br>
କଳାବଦନକୁ ମୋ ସୁନାର ଧନକୁ<br>
ଆସିଛି ଦେଖି ମୋ କଳାବଦନକୁ<br>
ଅନ୍ଧ ଲଉଡ଼ି ମୋ..."

ତପନ ପଟ୍ଟନାୟକ କବି ଓ କଥାକାର। ତାଙ୍କ ସାହିତ୍ୟରେ ଜୀବନ, ବାସ୍ତବତା ଓ କାଳ୍ପନିକ ରୂପ ଫେଣ୍ଟାଫେଣ୍ଟି ହୋଇ ଯେପରି କଥା ଓ କବିତା ରଚିତ ହୋଇଛି ତାହା ତପନ ପ୍ରତିଭାର ଯଥାର୍ଥ ସଙ୍କେତ।

ତପନ ଭାଇ ମୋର ଅତିପ୍ରିୟ ଥିଲେ। ସାହିତ୍ୟର ସେତୁ ହିଁ କବି ପଟ୍ଟନାୟକଙ୍କୁ ମୋ ପାଇଁ ବଡ଼ଭାଇର ସଂପର୍କରେ ବାନ୍ଧି ରଖିଥିଲା। ତାଙ୍କ ସହିତ ମୋର ସଂପର୍କ ନିବିଡ଼ ଓ ଦୀର୍ଘକାଳର...

ସେ ଆଉ ସ୍ୱଦେହରେ ନଥିଲେ ମଧ୍ୟ ବଞ୍ଚିରହିଛନ୍ତି ଓ ରହିଥିବେ କାଳକାଳ ଧରି ଆମମାନଙ୍କ ଭିତରେ ଓଡ଼ିଆ ସାହିତ୍ୟରେ।







# ତପନ ଏକ ନାମ ନୁହେଁ

**ବୈଦ୍ୟନାଥ ଖିଲାର**

ତପନ ପଟ୍ଟନାୟକ କେବଳ ଏକ ନାମ ନୁହଁ, ବରଂ ସାରସ୍ୱତ ସଂସାରର ଏକ ଶାବ୍ଦିକ ଉଚ୍ଚାରଣ । ଜୀବଦ୍ଦଶାରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ଦକ୍ଷ ଲେଖନୀ ମାଧ୍ୟମରେ ୫୦ରୁ ଊର୍ଦ୍ଧ୍ୱ ସାରସ୍ୱତ ସମ୍ଭାର ଦାନ ଦେଇ ଯାଇଛନ୍ତି ଉତ୍କଳୀୟ ବାଣୀ ଭଣ୍ଡାରକୁ । କାଳଚକ୍ରର ନିଦାରୁଣ ଗତିରେ ତାଙ୍କ ଆଖିର ଅକ୍ଷର ସବୁଦିନ ପାଇଁ ନିମିଳିତ ହୋଇ ଯାଇଥିଲେ ବି ସାହିତ୍ୟ ପ୍ରେମୀଙ୍କ ହୃଦୟରେ ସେ ଦେଦୀପ୍ୟମାନ ଏକ ଉଜ୍ଜ୍ୱଳ ନକ୍ଷତ୍ର ରୂପେ ପ୍ରତିଭାତ ରହିବେ,ଏହା ନିଃସନ୍ଦେହ । କାଳିଆର ଦର୍ଶନରେ ଭାବ ବିହ୍ୱଳିତ ହୃଦୟର ଭାଷା ଲେଖି ପକାଇଥିଲେ – 'ତତେ ଛାଡ଼ି ଯିବାକୁ ମୋ ମନ ବଳୁ ନାହିଁରେ...' ତଥାପି ଯିବାକୁ ପଡିଲା । ପଛରେ ଗଦାଗଦା ବହି, ରାଶି ରାଶି ଗୀତ, ତାଙ୍କୁ ଭଲ ପାଉଥିବା ଅଗଣନ ପାଠକ ପାଠିକା, ଗୀତ ପ୍ରେମୀ, ବନ୍ଧୁ ବାନ୍ଧବ ମାନଙ୍କର ଲମ୍ବା ଧାଡ଼ି । ଏଇଠି ତାଙ୍କ ସ୍ମୃତିରେ ମୁଁ ଅଶ୍ରୁ ଦି'ଟୋପା ସଭକ୍ତି ବିସର୍ଜନ କରୁଛି...ଭାଇ ଛାଡ଼ିଗଲ ଏକା କରି ।

ସେ ତ ସ୍ମୃତିତୀର୍ଥ । 'ଅଶ୍ରୁ ଅନ୍ଧକାର' ରେ ଖୋଜିଲେ ବି ଦେଖା ଯିବେ, ଧରା ଦେବେନି । ମନେ ପଡ଼ିବେ, ଭୁଲି ହେବେନି ଆଉ 'ଫେରିବାର ମୂର୍ଚ୍ଛନାରେ' ସେ ଏକ ବିସ୍ମୟ ଅନୁଭବ ମାତ୍ର । ତଥାପି ତାଙ୍କର ଅବର୍ତ୍ତମାନରେ ଫୁଲ ଫୁଟେ, 'ରତୁର ବାସ୍ନାରେ' ବିମୋହିତ ହୁଏ ସାରସ୍ୱତ ହୃଦୟ ।

ମା,ମାଟି,ଗାଆଁକୁ ଭଲ ପାଉଥିବା ତାଙ୍କର ପାଦଚିହ୍ନ ଲିଭିନି ବାଲୁଗାଁର ବାଲିରୁ । ଚିଲିକାକୁ ନେଇ ଅନେକ ପ୍ରଲମ୍ବିତ ସ୍ୱପ୍ନରେ ବଟୁରି ବଟୁରି ସେ ଚାଲିଗଲେ ଦୂରକୁ... ଅନେକ ଦୂରକୁ । ଏବେ ବି ତାଙ୍କ ସ୍ମୃତିରେ 'ଝରା ଶିଶିର'ର ହାଟ ବସେ...ଭେଟ ହୁଏ ତାଙ୍କ ସହ ଅଦୃଶ୍ୟ ଦୃଶ୍ୟରେ, କାଳିଜାଇରୁ ଘଣ୍ଟ ଶୁଭେ...ଭାଇ ଚାଲିଗଲେ । ବଡ଼ ଗୁଣର ଅଧିକାରୀ ଥିଲେ ସେ ଗୀତି କବିତାର ପରମ ପ୍ରେମିକ । ଅଳ୍ପ ଅଭିମାନୀ, ଅନେକ ସ୍ୱାଭିମାନୀ କବି । ଅକୁଣ୍ଠ ପ୍ରେମ ବାଣ୍ଟିବାରେ ତାଙ୍କର ଉଦାରପଣକୁ ପାଠକେ ମନେ ରଖିବେ ଚିରକାଳ । ହେ ବାଲୁଗାଁର ସୂର୍ଯ୍ୟ, ଆପଣଙ୍କ ଆତ୍ମାର ସଦଗତି କାମନା ସହ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି ।

*ଗୀତିକାର*





# କଙ୍କଡା ଯେଉଁ ଗାଆଁରେ ମିଳେ

ବୈଷ୍ଣବ ଚରଣ ମହାନ୍ତି

କବି ତପନ ପଟ୍ଟନାୟକଙ୍କ ସହ ମୋର ଚାଳିଶିରୁ ଅଧିକ ବର୍ଷର ସମ୍ପର୍କ । ବଡ ବନ୍ଧୁବତ୍ସଳ ସ୍ନେହୀ ମଣିଷ ସେ । ମୁଁ ତାଙ୍କ ବାଲୁଗାଁ ଘର ଓ ପୁରୀ ବସାକୁ ଯାଇଛି । ସେ ମଧ୍ୟ ଆମଘରକୁ ବହୁବାର ଆସିଛନ୍ତି । ମୁଁ ହଂସପାଳରେ ଘର କରିବା ପରେ ଦିନେ କବି କମଳ ମହାନ୍ତିଙ୍କୁ ଧରି ଖୋଜି ଖୋଜି ଆସି ଆମଘରେ ପହଞ୍ଚିଗଲେ ।

୧୯୮୯ରେ ବାଣପୁରରେ ଛଅମାସ କ୍ୟାମ୍ପ ଅଫିସ କରି ରହିବା ଭିତରେ ତାଙ୍କ ସହ ମୋର ସମ୍ପର୍କ ଆହୁରି ନିକଟତର ହେଲା । ଏକାଠି ବୁଲିବା, ବସିବା, ଖାଇବା, ସାହିତ୍ୟ ଆଲୋଚନା କରିବାରେ ବଳକା ସମୟ କଟିଲା ।

ବ୍ୟକ୍ତି ଓ ସ୍ଥାନର ଜନପ୍ରିୟତା ପରୀକ୍ଷା କରିବାକୁ ବାଣୀବିହାରରେ ପଢିବାଦିନୁ ମୁଁ କିଛି ମୃଦୁ ବାଲୁଙ୍ଗାମି କରେ । ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖକୁ ଚିଠି ଲେଖି ଠିକଣାରେ କେବଳ 'ମହତାବ' ଲେଖି ପକାଇଲେ ମହତାବ ଉତ୍ତର ଦିଅନ୍ତି –'ବୈଷ୍ଣବ, ତୁମ ଚିଠି ଅମୁକ ତାରିଖରେ ପାଇଲି ।' ସେଇ ଧାରାରେ ଦିନେ ମୁଁ ତପନ ବାବୁଙ୍କ ପାଖକୁ ଚିଠି ପଠାଇ ଠିକଣା ଲେଖିଲି-

'ତପନ ପଟ୍ଟନାୟକ'

ଗ୍ରାମ /ପୋ – କଙ୍କଡା ଯେଉଁ ଗାଁରେ ମିଳେ।

ଆଠଦଶ ଦିନ ପରେ ତପନବାବୁ ଗୋଟାଏ ବ୍ୟାଗରେ ବଡବଡ ବାଲୁଗାଁ କଙ୍କଡା ଧରି ଆସି ଆମଘରେ ହାଜର। କହିଲେ–'ସିଧା ତ କହିଥାନ୍ତ କଙ୍କଡା ଆଣ। କବି ଯଦୁମଣି ଷ୍ଟାଇଲିରେ ଏମିତି ମତେ ବାଧ୍ୟ କରିବାର କି ଦରକାର ଥିଲା !'

ଏକାଠି ବହୁଥର ଆମେ ହୃଦୟ ଖୋଲି ହସିଛୁ, ଆଜି ତାଙ୍କ ଭଳି ବନ୍ଧୁ ହରାଇ ମୁଁ ଆଖି ଖୋଲିଲେ ଲୁହ ଆସିଯାଉଛି । ତାଙ୍କ ଅମର ଆତ୍ମା ପ୍ରତି ମୋର ଶ୍ରଦ୍ଧାଞ୍ଜଳି।







# ଶାଳିଆ ନଈ ଓ ରାତିପକ୍ଷୀର ଗୀତ

**ଅଜୟ ସ୍ୱାଇଁ**

ସେତେବେଳେ, ମନକୁ ଖୁସି କରିବାର ବଡ଼ ମାଧ୍ୟମ ଥିଲା ରେଡ଼ିଓ । ଆକାଶବାଣୀ କଟକ, ବିବିଧ ଭାରତୀ, ଆଉ ରେଡ଼ିଓ ସିଲୋନାର 'ବିନାକା ଗୀତ୍‌ମାଲା'। ତେବେ ପ୍ରଥମରୁ MW Bandର ଆକାଶବାଣୀ କଟକ ଥିଲା ଆମ ସ୍ୱପ୍ନ ଓ ପ୍ରେମ । ଅଷ୍ଟମ, ନବମ ପଢ଼ିବା ବେଳକୁ ଆକାଶବାଣୀ କଟକର ଲୋକପ୍ରିୟ ସଙ୍ଗୀତ କାର୍ଯ୍ୟକ୍ରମ ଥିଲା ସଜଫୁଲ' । ମୋର ଟିକେ ଗୀତରେ ଲୋଭ ଯୋଗୁଁ, ମୁଁ 'ସଜଫୁଲ'କୁ ପ୍ରତି ସପ୍ତାହରେ ଚାହିଁ ବସୁଥିଲି । କାରଣ, ସପ୍ତାହରେ ଗୋଟେ ଦିନ ରାତି ଆଠଟାରେ ପ୍ରସାରିତ ହେଉଥିଲା, ମୋ ସ୍ୱପ୍ନର ଗୀତସବୁ ।

ସେ ସବୁ ଅଧୁନିକ ବା ଲଘୁ ସଂଗୀତ ଥିଲା । ଗୋଟେ ଗୀତ: "ଝରିଝରି ଯାଏ ହରେକେ ଫୁଲ ଲୋ.ମରି ମରି ଯାଏ ରଂଗ" ଏଯାଏଁ ବି ମୋ ଭିତରେ ବେଳ ଅବେଳରେ ବାଜେ । (ଯଦିଓ, ସେବେଳେ ମୁଁ ଓ ମୋ ବଂଧୁ ଚିତ୍ରସେନ ଦାସ 'ହରେକେ ଫୁଲକୁ' ଅରଖ ଫୁଲ ବୋଲି ଗାଉଥିଲୁ, କାରଣ 'ହରେକେ ଫୁଲ' ବୋଲି କିଛି ନାହିଁ ବୋଲି ଆମର ଧାରଣା ଥିଲା)

ସେତେବେଳକୁ ଆକାଶବାଣୀ କଟକର 'ସଜଫୁଲ' ରେ ତାଙ୍କ ଗୀତ ବାଜିଲାଣି । କିନ୍ତୁ ଆମେ ତାଙ୍କ ଗୀତ ଶୁଣିନୁ ସେଯାଏଁ ତାଙ୍କ ବି ସେଯାଏଁ ଚିହ୍ନିବାର ଉପାୟ ନାହିଁ । ଚିଲିକା କୂଳେ ତାଙ୍କ ଗାଁ, ଘର । ଚିଲିକାକୁ ନେଇ ବି ଗୁଡ଼େ କବିତା ସେ ଲେଖି ସାରିଲେଣି, ହେଲେ ଆମେ ସେସବୁ ପଢ଼ିନୁ । ଯାହା ପାଠ ବହିରେ ଅଛି। ସେତିକି ସାହିତ୍ୟ ଆମକୁ ଜଣା । ସେତକ ପୁଣି ପରୀକ୍ଷା ଯାଏଁ । ତା'ପରେ ସାହିତ୍ୟ ତା' ବାଟରେ, ଆମେ ଆମ ବାଟରେ । କୋଉ ସାହିତ୍ୟ ସଭାରେ ଦେଖା ହେଇଥିଲା ତାଙ୍କ ସହ । ମସିହା ମନେନାହିଁ । ଅବିକଳ ମାୟାଧର ମାନସିଂଙ୍କ ପରି ହେୟାର୍ ଷ୍ଟାଇଲ୍ । ମୁହଁ ବି ଚାଳିଶ୍ ପର୍ସେଣ୍ଟ ମିଶୁଥିଲା ମାନସିଂଙ୍କ ସହ । ମୁଁ ତାଙ୍କୁ ପଚାରିଲି : ଆପଣଙ୍କ ପ୍ରିୟ କବି କିଏ ?

ସେ କହିଲେ: ମାୟାଧର ମାନସିଂହ ଓ ବିଭୂତି ପଟ୍ଟନାୟକ ।

– ବିଭୂତି ପଟନାୟକ ? ମୁଁ ଆଶ୍ଚର୍ଯ୍ୟ ।

ସେ କିନ୍ତୁ ବିଭୂତି ପଟ୍ଟନାୟକଙ୍କର ଏକମାତ୍ର ପ୍ରକାଶିତ କବିତା ବହିରୁ (ସେ ଏକ ପ୍ରଗଲଭ୍ ନଦୀ) ଅନର୍ଗଳ ଗାଇ ଚାଲିଲେ କବିତା । ପୂରା ବହି ତାଙ୍କର ମୁଖସ୍ଥ।



ତାଙ୍କ ଠୁ ପ୍ରଥମେ ଜାଣିଲି ଯେ, ବିଭୂତି ପଟ୍ଟନାୟକଙ୍କର ବି କବିତା ବହିଟେ ଅଛି । ସେତେବେଳକୁ ଓଡ଼ିଶାର ସବୁ ପ୍ରତିଷ୍ଠିତ ପତ୍ରପତ୍ରିକାରେ ତାଙ୍କ କବିତା ସବୁ ପ୍ରକାଶିତ ହେଉଥାଏ । ସାତ / ଆଠଟି ଉପନ୍ୟସ, କାବ୍ୟତାରା  ଅପହଂଚ ପରି ଆଠ ଦଶଟି କବିତା ବହି ବି ବାହାରି ସାରିଥାଏ । ମୋଟାମୋଟି ଆମର ଭେଟ ହେବା ବେଳକୁ ସେ ଲେଖକ ଭାବେ ପ୍ରସିଦ୍ଧି ପାଇ ସାରିଥାନ୍ତି । ତା' ସହ ସାତ / ଆଠଟା ଉପନ୍ୟାସ ବି ତାଙ୍କର ପ୍ରକାଶିତ ହୋଇ ସାରିଥାଏ କଟକର ବଡ଼ ବଡ଼ ପ୍ରକାଶନ ସଂସ୍ଥାରୁ । ଅମାୟିକ, ଛଳଛଳ, ଅଭିମାନୀ, ଗୀତଗୀତ ମଣିଷଟିଏ । ତାଙ୍କୁ ଭେଟିବା ପରଠୁ ମୁଁ ସପ୍ତାହକେ ଥରେ ନିଶ୍ଚେ ବାଲୁଗାଁ, ବରକୂଳ ଡାକବଂଲୋରେ, ନହେଲେ ତାଙ୍କ ବାଲୁଗାଁ ଘରେ । ସେଠି ଖିଆପିଆ । ଡଙ୍ଗାରେ ଚିଲିକା ବୁଲା, ଶାଳିଆ ଡ୍ୟାମ୍ ପାଖେ ଭୋଜି, ନହେଲେ ତାଙ୍କ ଶ୍ୱଶୁର ଘରେ ଚା' ପିଆ । ହେଲେ ସବୁବେଳେ କବିତା, ଗୀତ ଓ ଅନ୍ୟାନ୍ୟ ।

ତାଙ୍କର ଜଣେ ପ୍ରିୟ କଣ୍ଠଶିଳ୍ପୀ ଥିଲେ (ଏବେ ବି ଅଛନ୍ତି । ଯଦିଓ ଓଡ଼ିଶାର ପ୍ରାୟ ସବୁ ଗାୟକ ତାଙ୍କ ଗୀତ ଗାଇଛନ୍ତି) । ସେ ହେଲେ ନବ ମିଶ୍ର (ନୟାଗଡ଼ର,ନବ କିଶୋର ମିଶ୍ର) । ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ଗାୟକ । ଯଦି ଆପଣମାନେ ତାଙ୍କ କଣ୍ଠରୁ ତାଙ୍କର 'ଆସିଚି ଦେଖି ମୋ କଳାବଦନକୁ, କଳାବଦନକୁ ମୋର କାଳିଆ ଧନକୁ ...' କିମ୍ବା 'ମତେ କରିଦେ ଦୀପଟିଏରେ ତୋ ଗରୁଡ଼ ଖୁମ୍ବର ତଳେ... ତା'ହେଲେ ବୁଝି ପାରିବେ କେମିତି ଦୀପଶିଖାଟିଏ ସ୍ତିମିତ ଭାବେ ଜଳିଜଳି କ୍ରମେ ନିଶ୍ଚିହ୍ନ ହେଇ ଯାଉଛି ଗରୁଡ଼ଖୁମ୍ବର ତଳେ... । କେମିତି ସେ ଦୀପଧୂଆଁର ପୋଡ଼ା ବାସ୍ନା ଚହଟି ଯାଉଛି... ସରପଟି ଯାଉଛି ଛାତି ଭିତରେ...

ସେ ହେଲେ ତପନ ପଟ୍ଟନୟକ ।

ଗୀତିକାର, କବି, ନାଟ୍ୟକାର, ଔପନ୍ୟାସିକ ଓ ପ୍ରକାଶକ ତପନ ପଟ୍ଟନାୟକ । ମୁଁ ତାଙ୍କୁ ଡାକେ ତପନ ଭାଇ । ଆମ ଭିତରେ ଏମିତି କିଛି କଥା ନାହିଁ, ଯାହା ଆମେ ପରସ୍ପର ସହ ଭାଗ ନ ବାଣ୍ଟିଛୁ । ତାଙ୍କ ଘରେ ଦୁଇଟା ବଡ଼ ଦସ୍ତା ଟ୍ରଙ୍କ ଅଛି । ଯେଉଁଥିରେ ପାଞ୍ଚହଜାରରୁ ବେଶୀ ଅଡ଼ିଓ କ୍ୟାସେଟ୍ ମୁଁ  ଦେଖିଥିଲି । ଏଯାଏଁ ବି ଅଛି ଗୋଟେ ।

ନ୍ୟାସନାଲ ପାନାସୋନିକ ଟେପ ରେକର୍ଡ଼ର । ଏଯାଏଁ ବି  ଚାଲୁଛି । କ୍ୟାସେଟ ବାଜୁଛି । ସେଇଥିରେ ମୁଁ  ଶୁଣିଥିଲି 'ମୁଁ ତ ବଡ଼ ଛଟପଟ ଝଡ଼ର ପବନ, ତୁମେ ବିଚଳିତ ଦୀପଶିଖା ।' ଦେବଦାସଙ୍କ ଗୀତ, ପ୍ରଣବ ପଟ୍ଟନାୟକଙ୍କ କଣ୍ଠରେ ।







ଯେତିକି କ୍ୟାସେଟ ବୋଧହୁଏ ତା ଠୁଁ ବେଶୀ ବହି । ଗୋଟେ ଗୋଟେ ବହିର ୪/ ୫ କପି ବି ତାଙ୍କ ପାଖେ ଥିବ । ବହୁତ ବହିରୁ ବାହାରୁଥିବ ଅର୍ଖ ନୂଆ ବାସ୍ନା । ପ୍ରଥମ ବର୍ଷା ଟୋପା ପଡ଼ିଲେ, ଯେମିତି ବାହାରେ ଶୁଖିଲା ମାଟିରୁ ।

ଆଜିକୁ ହିସାବ କଲେ, ତପନ ଭାଇଙ୍କ ସହ ମୋର ସଂପର୍କ ପଚାଶ ବର୍ଷ କି ତା ଠୁଁ ବେଶି । ତାଙ୍କୁ ବେଶି ବୁଝିପାରେ ବୋଲି ମୋର ବିଶ୍ୱାସ । ସେ ଟିକେ ଅଭିମାନୀ । ବେଳେବେଳେ ସେ ମୋ ଉପରେ ଅଭିମାନ କରନ୍ତି । ହେଲେ, ଦେଖାହେଲେ ଅଭିମାନଟି ଥାଏ, କିନ୍ତୁ କାରଣଟିକୁ ସେ ଭୁଲି ଯାଇଥାନ୍ତି। ପୁଣି ସେମିତି ନିଷ୍କପଟ ହସ । ପୁଣି ସେମିତି ନିମନ୍ତ୍ରଣ: " ବହୁତ ଦିନ ହେଲା ବାଲୁଗାଁ ଆସିନୁ। ପାନ୍ଥନିବାସ ଆଉ ଚିଲିକା ତତେ ଖୋଜୁଛନ୍ତି ।"

ଏମିତି ହେଇଛି, ଆମେ ରାତି ଏଗାରଟାରେ ବାଇକରେ ବାଲୁଗାଁ ଯାଇଛୁ । ପହଂଚିଛୁ ଗୋଟାଏ ବେଳେ ଚିଲିକା ପାନ୍ଥନିବାସରେ । ସେତେବେଳେ ମ୍ୟାନେଜର ସାମନ୍ତରା ବାବୁ । ବଡ଼ ହସମିଳାଜର ମଣିଷ। ରାତି ଗୋଟାଏରେ ବିଶେଷ କରି ଅଧା ଜହ୍ନରାତିର ଚିଲିକା ମୋତେ ଦେଖାଇଥିବାରୁ, ତପନ ଭାଇ ଆପଣଙ୍କୁ ଲକ୍ଷେ ଧନ୍ୟବାଦ ।

ଚିଲିକାକୁ ନେଇ ଅନେକ କବିତା, କମ୍ ଗପ ଲେଖା ହେଇଛି ଓଡ଼ିଆରେ । କିଛି ବି ଇଂରାଜୀରେ ଅନୁବାଦ ହେଇଛି । ଯଦି ଚିଲିକା ରକ୍ତ ହୋଇ କାହା ଶିରା ପ୍ରଶିରାରେ ପହଁରୁଥାଏ, ତେବେ ସେ ହେଲେ ତପନ ଭାଇ ।

ଚିଲିକାକୁ ନେଇ ତାଙ୍କର ଅନେକ ସ୍ୱପ୍ନ, ଅନେକ ପ୍ରେମ । ଏମିତିକି ଚଢ଼େଇହଗା ପାହାଡ଼ର, ଧଳା ଧଳା ପଥର ଉପରେ ବସି ଗୀତ ଗାଇବା, କବିତା ପଢ଼ିବା, ଚିଲିକାକୁ ନେଇ ଗପ ଓ କବିତାର ବଡ଼ ସଂକଳନଟିଏ କରିବା ଥିଲା ତାଙ୍କର ସ୍ୱପ୍ନ । ଏ ସ୍ୱପ୍ନ ତାଙ୍କର ଏଯାଏଁ ସାକାର ହୋଇପାରି ନାହିଁ ।

ଚିଲିକା ପୋତି ହେଉଛି ।

ରମ୍ୟା ଚିଲିକା, ଦଳରେ ଭର୍ତ୍ତି ହେଉଛି ।

ଶୀତ ଋତୁରେ ପକ୍ଷୀମାନଙ୍କ ସଂଖ୍ୟା କମିବାରେ ଲାଗିଛି । ପକ୍ଷୀ ଶିକାର ବି ଚାଲିଛି ଲୁଚାଛପାରେ । ଚଢ଼େଇହଗା ପାହାଡ଼ ଉପରେ ବସି ଦଳେ ଭାସୁଥିବା ରାଜହଂସଙ୍କ ଦେଖି ତପନ ଭାଇ ଗାଇଥିଲେ:

ଧବଳ ରାଜହଂସ, ରଜୁ ତା' ଗ୍ରୀବା

ସ୍ଥୁଳ -ଗ୍ରଥିତ ମଲ୍ଲି- ମାଳିକା କିବା



ବିହରୁଥିଲା କେଉଁ ସରସୀ ଜଳେ
ପ୍ରେୟସୀ ଘେନି ସାଥେ ପ୍ରଣୟ ଭରେ
ନିର୍ମମ ଆତତାୟୀ ମନୁଷ୍ୟ କାହିଁ
ଅଣିଲା ଧରି ଜିହ୍ୱା ଲାଳସା ପାଇଁ...

ତପନ ଭାଇଙ୍କ ସ୍ୱପ୍ନ ଭାଙ୍ଗୁଥିଲା ଚିଲିକା ସହ । ଏଇବେଳେ ତାଙ୍କର ବଦଳି ହେଇଗଲା ପୁରୀ । ଏ ବେଳକୁ ତାଙ୍କ ଉପରିସ୍ଥ ଜଣେ ଏକଜିକ୍ୟୁଟିଭ ଇଂଜିନିୟର୍ ତାଙ୍କୁ ମିଛ କେଶରେ ଫସେଇ ଦେଇଥାନ୍ତି । (ବୋଧହୁଏ ସେଇ କେଶ ଆଜିଯାଏଁ ଚାଲିଛି ଓ ଅବସର ପାଇ ପରେ ବି ତାଙ୍କର ବକେୟା ପାଉଣା କେତେ ଲକ୍ଷ ଟଙ୍କା ତପନ ଭାଇ ପାଇ ନାହାନ୍ତି ।)

ସେଇ ମନସ୍ତାପ ଭିତରେ ତପନ ଭାଇ, ପୁରୀର ନବଜଳେବର ରୋଡ଼ରେ ଭଡ଼ାଘରେ ରହିଲେ ଓ କିଛି ଭଲ ଭଲ ଲେଖକଲେଖିକାଙ୍କ ବହି ବି 'ସମନ୍ୱୟ' ପ୍ରଳାଶନ ସଂସ୍ଥା ନାଁରେ ପ୍ରକାଶ କଲେ । ଗିରିଜା ଭାଇ (କବି ଗିରିଜା କୁମାର ବଳିୟାରସିଂ)ଙ୍କ କଲ୍ୟାଣୀନଗର ପ୍ରେସରେ ବହି ସବୁ ଛପେଇଲେ । ସେଇଠି ଗିରିଜା ଭାଇ ମୋ ବହି " ଶିରୀଷଗଛର ଛାଇ' ରେ ଗୋଟେ ପୃଷ୍ଠବନ୍ଧ ବି ଲେଖିଲେ ।

ମୋର ଯୋଉ ଲେଖା ବାହାରିବ, ତପନ ଭାଇ କହିବେ, ମୁଁ ଛାପିବି । ମୋର ଅନେକ ବହି ସେ ଛାପିଛନ୍ତି । ଯେତେବେଳେ ମତେ ଦେଖିଛନ୍ତି ବା ମୁଁ ତାଙ୍କ ପୁରୀ ଘରକୁ ଯାଇଛି, ଯେତେ ଇଚ୍ଛା, ସେତେ ବହି ଦେଇଛନ୍ତି । କେବଳ ମୋ ବହି ନୁହେଁ, ଅନ୍ୟ ଲେଖକ / ଲେଖିକାଙ୍କର ବହି ବି ।

ଅମେ ବହୁତ ବୁଲିଚୁ ସାଙ୍ଗ ହୋଇ । ବହୁତ କଥା ଆମ ଭିତରେ ଅଛି । ଯାହାକୁ ସାଙ୍ଗରେ ନେଇ ଆମେ ମଶାଣିକୁ ଯିବୁ । ମତେ ସବୁବେଳେ ସେ କବି ହିଁ କୁହନ୍ତି । ମୋ ଗପ, ଉପନ୍ୟାସ ଛାପିବା ବେଳେ କୁହନ୍ତି: ତୋ' କବିତା ବହି ମୁଁ ଛାପିବି । ମୋର ପ୍ରଥମ କବିତା ବହି ' 'ନଈକୂଳ ଗାଁ"କୁ ସେ ହିଁ ଛାପିଛନ୍ତି ଓ ସେଥିରେ ଅଠପୃଷ୍ଠାର ମତାମତ ବି ଲେଖିଛନ୍ତି ।'

ସେ "ରାତିପକ୍ଷୀ' ମାନଙ୍କୁ ଭଲ ପାଆନ୍ତି । ଅନେକ ଥର ରାତି ଦଶଟାରେ ବାଣପୁର ଠୁଁ ଆମେ ଶାଳିଆ ଡ୍ୟାମ ଯାଇଛୁ । କେବଳ ଏଇ ରାତି ପକ୍ଷୀମାନଙ୍କୁ ଦେଖିବା ପାଇଁ ।

ମୁଁ କହେ : ଏ ଗୁଡ଼ା ପେଚା । ଅଶୁଭ ପରା ?'





ସେ କହନ୍ତି : ରାତିପକ୍ଷୀମାନଙ୍କର ନାଁ ନାହିଁ । ଏମାନେ ଅନ୍ଧାରର ପକ୍ଷୀ । ଏମାନଙ୍କର ରଙ୍ଗ ହିଁ ଅନ୍ଧାର...ପରିଚୟ ବି ଅନ୍ଧାର । ନାଁ ବି ଅନ୍ଧାର... ।

ଅଦ୍ଭୁତ !

ତାଙ୍କର ସଂସାରଟି ଛୋଟ । ଭାଉଜ ଓ ଗୋଟିଏ ପୁଅ ସଂବିତ । ହେଲେ ଅନେକ ସଂସାରର ଦାୟିତ୍ୱ ତାଙ୍କ କାନ୍ଧରେ । ଭାଇ, ଭଉଣୀ, ଭଣଜା, ଭାଣିଜୀ, ଶଳା, ଶାଳୀ, ଶାଶୁ, ଶ୍ୱଶୁର, ବନ୍ଧୁ, ବିରାଦର ସମସ୍ତଙ୍କ କଥା ସେ ବୁଝୁଥିଲେ । ସମସ୍ତଙ୍କୁ ଭଲ ପାଉଥିଲେ । ସମସ୍ତଙ୍କୁ ଆଦର କରୁଥିଲେ । ସମସ୍ତଙ୍କୁ ଅଭିମାନ କରୁଥିଲେ । ସବୁ ଜଞ୍ଜାଳକୁ ନିଜ ଉପରକୁ ନେଇ ପାରୁଥିଲେ । ସେଥିପାଇଁ ତାଙ୍କୁ ଗୋଟେ ଗୀତ ଗାଇ ମୁଁ ଶୁଣାଉଥିଲି: ଜୀବନ ଜୁଆ ଯଦି ଖେଳିବୁ, ଖେଳାଇଥିବୁ କାଲୁଆ ନକରିବୁ କଲିଜା... ସେ ହସୁଥିଲେ । ତାଙ୍କ ମୁହଁକୁ ଅଭିମାନ ଯେମିତି ମାନେ, ହସ ବି ସେମିତି ମାନେ ।

ତାଙ୍କ ବାପା ପଦ୍ମଚରଣ ପଟ୍ଟନାୟକ, ନାଟ୍ୟକାର, ସଂଗଠକ । ଗୋଟେ ଗୀତ, ନାଚ ସ୍କୁଲର ସେ ପୃଷ୍ଠପୋଷକ ବି ଥିଲେ । କଳାକାର ଲୋକ । ହିଂସା ଛନ୍ଦ, କପଟ କିଛି ନାହିଁ । ପଦ୍ମପତ୍ରରେ ପାଣି ପରି ଢଳଢଳ ସ୍ୱଚ୍ଛ ହୃଦୟର ମଣିଷ । ତାଙ୍କ ପୁଅ ଝିଅଙ୍କ ଭିତରୁ ତାଙ୍କ ଗୁଣ ବୋଧେ କେବଳ ତପନ ଭାଇ ଆଣିଛନ୍ତି । ପଦ୍ମଚରଣ ପଟ୍ଟନାୟକଙ୍କର ଗୋଟେ ଗ୍ରନ୍ଥାବଳୀ ବି ସେ ଛାପିଛନ୍ତି । ବହୁତ ଦିନ ତଳେ ଗୋଟେ ଉର୍ଦ୍ଦୁ ଗଜଲ ଶୁଣିଥିଲି, ଭଗବାନ ସବୁ ଠୁ ଭଲ ପାଉଥିବା ମଣିଷକୁ ହିଁ କଷ୍ଟ ଦିଅନ୍ତି । ସେମିତି ହିଁ ହେଲା । ମୋର ବେଶୀ ଫୁଲାଫାଙ୍କିଆ ଗୁଣ । ଅନେକ ଦିନଯାଏଁ ତପନ ଭାଇଙ୍କ ସହ ମୋର ବେଶୀ ଦେଖା ହେଇ ପାରିଲାନି । ଯଦିଓ ସେ ପୁରୀ ଉଡ଼ାଘରେ ରହୁଥିଲେ । ଅନେକଦିନ ଯାଏଁ ମୁଁ ପୁରୀ ଯାଇ ପାରିନଥିଲି । ସେହେତୁ ତାଙ୍କ ସହ ଦେଖା ହୋଇ ପାରି ନଥିଲା । ମତେ ଫୋନ କରି କହିଲେ: ତୋର ତ ଅନେକ ଗୁଡ଼େ କବିତା ହେଇଯିବଣି । ବହିଟେ ଛାପିଦେବା । ଡେରି ହେଲାଣି ।

ମୁଁ କହିଲି : ହଉ ।

ତଥାପି ପୁରୀ ଯାଇପାରିଲି ନାହିଁ । ( ଆମ ବୋଉର ଭାଷାରେ: ଜଗନ୍ନାଥଙ୍କ ଡୋରି ନଲାଗିଲେ, କିଏ ଗଲାଣି ପୁରୁଷୋତ୍ତମ କ୍ଷେତ୍ର ?) ଜଗନ୍ନାଥଙ୍କ ପ୍ରତି ମୋର ଦୁର୍ବଳତା ଅଛି । ବେଶି ଅଛି ସମୁଦ ପ୍ରତି । ତା ଠୁଁ ବେଶି ତପନ ଭାଇଙ୍କ ପ୍ରତି ।

ଖବର ପାଇଲି, ସେ 'କେମୋ ' ନେଉଛନ୍ତି । ପୂରା ଶୁଖି ଝଡ଼ି ଯାଇଛନ୍ତି । ପୁରୀରେ ତାଙ୍କୁ ଦେଖା କଲି । ହେଲେ ତାଙ୍କର ଆତ୍ମବିଶ୍ୱାସ ଥାଏ ସେମିତି ଅତୁଟ ।



ଆମେ ବଡ଼ଦାଣ୍ଡରେ ତାଙ୍କ ପ୍ରିୟ ଚା' ଦୋକାନରେ ଚା' ପିଇଲୁ । ସେ ଗଳା କ୍ୟାନସରର ପ୍ରଥମ ପର୍ଯ୍ୟାୟରେ ଥିଲେ । ମୋ ଜାଣିବାରେ ସେ କୌଣସି ମାଦକ ଦ୍ରବ୍ୟ ଛୁଉଁନଥିଲେ।

ନା ପାନ ବିଡ଼ି ସିଗ୍ରେଟ, ଗୁଡ଼ାଖୁ ମଦ, ଗୁଟଖା ତ ଦୂରର କଥା, ବଦଭ୍ୟାସ କହିଲେ ଚା' ।

ମୁଁ ପଚାରିଲି : କେମିତି ହେଲା ଏସବୁ ? ସେ ହସିଲେ । କହିଲେ : କୌଣସି ରୋଗର କିଛି କାରଣ ନାହିଁ । ଏ ଯୋଗୁଁ ଏ ରୋଗ ହେଲା, ସୁଦୁ ମିଛ ଓ ଭ୍ରମ, ଯାହା ହେବା କଥା ଅବଶ୍ୟ ହେବ ।

ଏଲୋପାଥିକ୍ ପରେ ସେ ହୋମିଓପାଥି ବି ଖାଇଲେ । କିଏ ଜଣେ ତାଙ୍କୁ କହିଲା: ହୋମିଓପାଥିରେ କ୍ୟାନସର୍ ପୂରା ଭଲ ହେଇଯିବା ସମ୍ଭବ । ତା'ପରେ ସେ ଭଲ ହେଲେ । ପୁଣି ଚଲାବୁଲା, ଲେଖାଲେଖି, ପ୍ରକାଶନରେ ମନ ଦେଲେ । ହେଲେ, ଆଗର ସରସତା ତାଙ୍କ ମୁହଁରେ ନଥିଲା ଭଳି ମତେ ଲାଗୁଥିଲା । ମାୟାଧର ମାନସିଂଙ୍କ ପରି ତାଙ୍କର କୁଞ୍ଚୁକୁଞ୍ଚିଆ ବାଳ ପ୍ରାୟ କମି ଯାଇଥିଲା । ସେ କହିଲେ : ଏ ସବୁ 'କେମୋ'ର କୁପ୍ରଭାବ ।

ତଥାପି ସେ ଏତେ ଭାଙ୍ଗି ପଡ଼ି ନଥିଲେ।

ଏଇବେଳେ ସେ ପୁରୀ ଛାଡ଼ି ଭୁବନେଶ୍ୱର ଚାଲି ଆସିଲେ ଓ ଘରଭଡ଼ା ନେଲେ ସାମନ୍ତରାପୁରରେ ।

- ଭଲ ହେଲା । ଏଥର ଆମର ସବୁଦିନ ଦେଖାଚାହାଁ ହେଇପାରିବ । ମୁଁ କହିଲି ।

ସେ ଅଭିମାନରେ କହିଲେ : ତୋ'ର କୋଉ ସମୟ ହେବ ? ଖାଲି ଏମିତି କହି ଦେଉଛୁ...

ମୁଁ ହସିଲି ।

ହଠାତ ବନ୍ଧୁ ତାରକ ମହାନ୍ତି ଖବର ଦେଲେକ ତପନ ଭାଇ ଏବେ ହସ୍‌ପିଟାଲରେ । ବୁଝିଲି ତାଙ୍କର ଦୁଇଟା ଯାକ କିଡନୀ କାମ କରୁନି । କାମଚଳା ଚିକିତ୍ସା ହେଲା, ଡାଏଲେସିସ ।

ବେକ ହାତରେ ସିରିଞ୍ଜି ଫୋଡ଼ାର କଷ୍ଟ ଓ ବଂଚିବାର ସଂଗ୍ରାମ ଭିତରେ ଏବେ ତପନ ଭାଇ । ଖବରକାଗଜରେ ଏଇ ଖବର ବାହାରିବା ପରେ ସାହିତ୍ୟ ମହଲରୁ ଯତକିଞ୍ଚିତ୍ ସାହାଯ୍ୟ ମିଳିଛି । ପ୍ରତି ସପ୍ତାହରେ ଏବେ ତିନିଥର ଡାଏଲେସିସ ।







ଏ ଭିତରେ ଦେଖା ହେଇଥିଲେ ପୁରୁଣା ବସଷ୍ଟାଣ୍ଡରେ, ଖରାବେଳେ । ନିର୍ଭୀକପଣିଆ ଯେମିତି ଅଛି ଠିକ ସେମିତି କବିଟିଏ ତାଙ୍କ ଭିତରେ ସନ୍ଦର୍ପରେ ଛିଡ଼ା ହେଇଛି । ଉଦାସ ବଂଶୀସ୍ୱନଟିଏ ସେମିତି ପହଁରୁଛି ତାଙ୍କ ଆଖିରେ । ମୁଁ ମୁହଁ ଲୁଚେଇଲି । ଚାହିଁ ପାରିଲିନି ତାଙ୍କ ଆଖିକୁ । କାହାର ଏ ଆଖି ? ଯାହା ସହ ତିରିଶ ବର୍ଷର ଦେଖାଚାହାଁ ।

ପଚାରିଲି : କେମିତି ଲାଗୁଛି ?

ସେ କହିଲେ : ବହୁତ କଷ୍ଟ... ବହୁତ ଯନ୍ତ୍ରଣା, ସଂବିତ ପାଇଁ ଭଲ ଝିଅଟେ ଯୋଗାଡ଼ କରିପାରୁନୁ ?

ମୁଁ ଚୁପ !

ତାଙ୍କ ଅଖିରେ ଏତେବର୍ଷ ଭିତରେ କେବେ ଲୁହ ଦେଖିନଥିଲି । ସେଦିନ ବି ଦେଖିଲି ନାହିଁ ।

ସେ କହିଲେ : ମୋର କବିତା ସଂକଳନ ସମୁଦାୟର ପ୍ରଥମ ଖଣ୍ଡ ବାହାର କରିବି । ହଜାରେ ପୃଷ୍ଠାର । ଦେଖାଯାଉ ।

ମୁଁ କହିଲି : କେହି କିଡନୀ ଡୋନର୍ ଅଛନ୍ତି ଆପଣଙ୍କ ପରିବାରରେ । କେହି ରାଜି ଅଛନ୍ତି ?

ସେ ହସିଲେ । କିଛି କହିଲେନି । କିଛି ସମୟ ପରେ ସେ ଚାଲିଗଲେ । ସେଇ ଖରାରେ । ପ୍ରଥମ ଥର ପାଇଁ ମୁଁ ଅନୁଭବ କଲି, ଖରା ବି ଲୁଚେଇ ପାରେ ଛାଇ ।

ତା'ପରେ ତାଙ୍କୁ ଫୋନ ଲଗେଇଲେ, ସେ ଉଠେଇ ପାରନ୍ତି ନାହିଁ । କାଲି ପୁଅ ସଂବିତ ଉଠେଇ ଥିଲା । କହିଲା : ବାପାଙ୍କର ଡାଏଲେସିସ ଚାଲିଛି ଏବେ... ।

ତପନ ଭାଇ ? ଏବେ ବି ଶାଳିଆ ଡ୍ୟାମ ଅଛି । ରାତିପକ୍ଷୀମାନେ ଆଲୁଅକୁ ଡରି ଉଡ଼ି ଯାଉଛନ୍ତି । ମୁଁ ତୁମକୁ ଫୋନ କରି ପାରୁନାହିଁ । ଡର ଲାଗୁଛି । କାହିଁକି ଲାଗୁଛି, ଜାଣିନି । ମତେ କ୍ଷମାକର... ।

ଦୁଃଖ ଦିନରେ ମୁଁ ନଥିଲି ତମ ପାଖେ । ଦୁଃଖର ପାହାଡ଼ ତଳେ ବାମନ ହୋଇ ଚାପି ହୋଇଯାଉଥିଲ ପାତାଳକୁ ତଥାପି ତମ ଆଖିରେ ଦପ୍ ଦପ୍ ହେଉଥିଲା ଅନେକ ସ୍ୱପ୍ନ, ଅନେକ ଆଶା । ଶେଷରେ ସେଇ ଆଶ ତୁମକୁ ଧୋକ୍କା ଦେଲା । ତୁକେ ଚାଲିଗଲ । ମୁଁ ନଥିଲି ତମ ପାଖେ । ତପନ ଭାଇ ଯୁଗେ ଯୁଗେ ସେମିତି ଅଭିମାନୀ ତପନଭାଇ ହୋଇ ଜନ୍ମ ହୁଅନ୍ତି ।

ତମ ଆତ୍ମାର ଶାନ୍ତି ଓ ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛି । 



# ତପନ କି ଅସ୍ତ ହୋଇପାରେ !!

ରମେଶ ମଙ୍ଗରାଜ

ତପନ ତ ଆଜି ଅସ୍ତ ହୋଇଗଲେ ଦୂର ଦିଗ୍‌ବଳୟ ଛୁଇଁ
କେମିତି ସମୟ ଟାଣି ନେଇଗଲା ଏହା ଭାବି ପାରୁନାହିଁ
'ମହଲ' ଖଟିରେ ସମ୍ପର୍କ ଆମର ହୋଇନି ଏଯାଏଁ ଭୁଲି
ବଂଶୀବାବୁ ତ କିଛି ଦିନ ତଳେ ଏମିତିକା ଗଲେ ଚାଲି ।

ଚିଲିକା କୂଳରୁ ଶୀରିକ୍ଷେତ୍ର ଛୁଇଁ ସବୁଠାରେ ଗୁଞ୍ଜରିତ
'ମୁଁ ଆସିଛି ଦେଖି କଳା ବଦନକୁ' କି ସୁନ୍ଦର ସେଇ ଗୀତ ।
'ଅସରା ଲୁହରେ' କବି ଦେଇପାରେ 'ଧୂପ ଦୀପ ନୈବେଦ୍ୟ'
'ଅଭୁଲା ଗୀତ'ର 'ସ୍ୱରଲିପି' ଆଜି ହରାଇଛି ତା'ର ଛନ୍ଦ ।

'ଦୁଃଖ ଗୋଟିଏ ଗାଁର ନାଁ' ଅନ୍ଧାରର ପାଦ ଚିହ୍ନ
'ଅଝଟ ପଣରୁ ଆଞ୍ଜୁଳାଏ' ସେଠି ହଜାଇ ଦେଇଛି ମନ
'ନୀଳ ନିର୍ଜନ'ର 'ଜୀବନ କାବ୍ୟ' 'ଅଧାଲେଖା ପାଣ୍ଡୁଲିପି'
ଏଇ 'ଚଟିଘର' 'ଅଶ୍ରୁ ଅନ୍ଧକାର' 'କ୍ଳାନ୍ତପକ୍ଷୀ' ଅଛି ଛପି ।

'ଝରା ଶିଶିର' ଓ 'ବିଦଗ୍ଧ ବସନ୍ତ' 'ପ୍ରଦକ୍ଷିତ ପ୍ରତିପ୍ରସ୍ଥ'
ହେ କବି ତପନ ରହିଛ ହୃଦୟେ ହେବ ନାହିଁ କେବେ ଅସ୍ତ ।



*କବି ଓ କବିତା ଭବନ*
*ମହୁଲ, ଅଙ୍ଗାରପଡ଼ା, ଖୋର୍ଦ୍ଧା- ୭୫୨୦୫୪*
*ମୋ- ୮୧୧୪୬୦୯୨୮୦*





# ନିରବିଗଲେ ତପନ ପଟ୍ଟନାୟକ

**ଗୌର ପଟ୍ଟନାୟକ**

ମାର୍ଚ୍ଚମାସ ସନ୍ଧ୍ୟାରେ ବିଶିଷ୍ଟ ସାହିତ୍ୟ ସାଧକ, ଲୋକପ୍ରିୟ ସ୍ରଷ୍ଟା, ସାନଭାଇ ତପନ ପଟ୍ଟନାୟକଙ୍କ ଦେହାନ୍ତ ଖବର ପାଇ ମର୍ମାହତ ହେଲି । ସେ ଥିଲେ ଏକାଧାରରେ କବି, ନାଟ୍ୟକାର, ଔପନ୍ୟାସିକ, ଗୀତିକବି ଏବଂ ଶିଶୁ ସାହିତ୍ୟ ରଚୟିତା । ତାଙ୍କ ସୃଷ୍ଟି ସମ୍ଭାର ୪୮ ଗୋଟି ପୁସ୍ତକ ମଧ୍ୟରେ ଅଛି ୩୦ ଗୋଟି କବିତା ପୁସ୍ତକ, ୧୧ ଗୋଟି ଉପନ୍ୟାସ, ୫ ଗୋଟି ଗୀତି କବିତା ପୁସ୍ତକ । ଦୁଇଟି ନାଟକ ଏବଂ କିଛି ଶିଶୁ ସାହିତ୍ୟ ପୁସ୍ତକ । ସାରା ଜୀବନ ସେ ସାହିତ୍ୟ ସାଧନରେ ନିଜକୁ ଉତ୍ସର୍ଗ କରିଦେଇଥିଲେ । ପୁରୀରେ ଥିଲାବେଳେ ସମନ୍ୱୟ ନାମକ ଏକ ପ୍ରକାଶନ ସଂସ୍ଥା ଗଢ଼ି ବହୁ ଲେଖକ ଲେଖିକାଙ୍କ ସାହିତ୍ୟ କୃତିକୁ ଲୋକଲୋଚନକୁ ଆଣିଛନ୍ତି । ବହୁ ବର୍ଷଧରି ରୋଗ ଯନ୍ତ୍ରଣାରେ ପୀଡ଼ିତ ରହିମଧ୍ୟ ଓଡ଼ିଆ ସାହିତ୍ୟର ପ୍ରଚାର ପ୍ରସାର ଏବଂ ଉନ୍ନତି ଦିଗରେ ନିଷ୍ଠାପର ଉଦ୍ୟମ ଜାରି ରଖିଥିଲେ । ନିଜେ ଲୁହ ପିଇପିଇ ଅନ୍ୟର ମୁହଁରେ ହସ ଫୁଟେଇ ଚାଲିଥିଲେ । କିନ୍ତୁ ଦୁଃଖର କଥା ଓଡ଼ିଶା ତାଙ୍କ ତ୍ୟାଗ, ସାଧନକୁ କଳନା କରିପାରିଲା ନାହିଁ କି ଉପଯୁକ୍ତ ସମ୍ମାନ ଦେଇ ପାରିଲା ନାହିଁ ।

ମୁଁ ଆକାଶବାଣୀ କଟକ କେନ୍ଦ୍ରର ସାହିତ୍ୟ ବିଭାଗରେ କାର୍ଯ୍ୟରତ ଥିଲାବେଳେ ବାଲୁଗାଁରେ ଏକ କବି ସମ୍ମିଳନୀ କରିବା ପାଇଁ ସେ ଅନୁରୋଧ କରିଥିଲେ ଏବଂ ସମ୍ପୂର୍ଣ୍ଣ ଦାୟିତ୍ୱ ସେ ବହନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଓଡ଼ିଶାର ବହୁ ପ୍ରତିଷ୍ଠିତ କବି ଆକାଶବାଣୀର ସେହି କବି ସମ୍ମେଳନରେ ଯୋଗ ଦେଇଥିଲେ । ଲୋକପ୍ରିୟ କଣ୍ଠଶିଳ୍ପୀ ଭିକାରୀଚରଣ ବଳ ଏବଂ ରଂଜିତା ସେନାପତି ସେଠାରେ ସଂଗୀତ ପରିବେଷଣ କରିଥିଲେ । ସଫଳତାରର ସହିତ ଅତ୍ୟନ୍ତ ମନୋଜ୍ଞ ଢଙ୍ଗରେ କବିସମ୍ମେଳନ ହୋଇଥିଲା । ତପନବାବୁ କବିମାନଙ୍କୁ ଏବଂ କଣ୍ଠଶିଳ୍ପୀମାନଙ୍କୁ ଡଙ୍ଗାରେ ଚିଲିକା ବୁଲାଇବା ବ୍ୟବସ୍ଥା ମଧ୍ୟ କରିଥିଲେ । ସେଦିନର ସେ ଅଭୁଲା ସ୍ମୃତି କ'ଣ ଭୁଲି ହେବ ?



ମୁଁ ସଂଗୀତ ବିଭାଗର ଦାୟିତ୍ୱରେ ଥିବା ବେଳେ ତାଙ୍କର ଅନେକ ଗୀତ ପ୍ରଚାର କରିବାର ବ୍ୟବସ୍ଥା କରିଛି । ଅତି ଚମତ୍କାର ଗୀତ ଲେଖିବାର କଳା ତାଙ୍କୁ ଜଣାଥିଲା । ତାଙ୍କର ଶବ୍ଦ ଚୟନ ବେଶ୍ ମନଛୁଆଁ ଏବଂ ପ୍ରଭାବଶାଳୀ ଥିଲା । 'ଆସିଛି ଦେଖି ମୋ କଳା ବଦନକୁ' ଏକ କାଳଜୟୀ ରଚନା ହୋଇ ରହିଯାଇଛି ।

ତପନ ବାବୁ ଆକାଶବାଣୀ ସମ୍ମାନ, ଓଡ଼ିଆ ଗୀତିକବି ସମ୍ମାନ, ଖୋର୍ଦ୍ଧା ଗୌରବ ସମ୍ମାନ, ଝଙ୍କାର ସମ୍ମାନ, ଚିଲିକା ସମ୍ମାନ ଇତ୍ୟାଦି ବହୁ ସମ୍ମାନ ଲାଭ କରିଛନ୍ତି । ତାଙ୍କୁ ଗର୍ବ ଅହଂକାର କେବେ ଛୁଇଁ ନଥିଲା । ସ୍ୱାଭିମାନୀ, ଧୀରସ୍ଥିର, ନମ୍ର, ମେଳାପୀ ଏବଂ ବନ୍ଧୁପ୍ରେମୀ ଭାବରେ ସେ ପରିଚିତ ଥିଲେ । ମୋ' ଠୁ ସାତବର୍ଷ ସାନ ଥିବାରୁ ମୋତେ ଗୌରଭାଇ ବୋଲି ସମ୍ବୋଧନ କରୁଥିଲେ । ମୁଁ ବି ସାନଭାଇ ଭଳି ତାଙ୍କୁ ସ୍ନେହ ଆଦର କରୁଥିଲି । ୧୯୭୦ ମସିହାରୁ ତାଙ୍କ ସହିତ ମୋର ପରିଚୟ। ସେ' ବହୁତଥର ଆମ ଘରକୁ ଆସିଛନ୍ତି, ଆମ ଘରେ ରହିଛନ୍ତି । ଆମ ପରିବାରର ଜଣେ ସଦସ୍ୟ ଚାଲିଗଲେ ବୋଲି ମୁଁ ଅନୁଭବ କରୁଛି । ଏ ଦୁଃଖକୁ ଭାଷାରେ ବ୍ୟକ୍ତ କରିହେବନି । ତାଙ୍କର ଅବର୍ତ୍ତମାନରେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।



*ସଭାପତି, ଓଡ଼ିଆ ଗୀତିକବି ସମାଜ,*
*ସି- ୧୨୪୬, ସେକ୍ଟର ୬, ସିଡ଼ିଏ କଟକ-୧୪*
*ଦୂରଭାଷ : ୯୪୩୮୫୧୧୧୮୫*





# "ଆସିଛି ଦେଖି ମୋ'କଳାବଦନକୁ ଅନ୍ତରାଳେ"

## ସୁରଗନ୍ଧର୍ବ ନବକିଶୋର ମିଶ୍ର

ଆକାଶବାଣୀର ଗୀତିକାର ହିସାବରେ ତପନବାବୁଙ୍କ ସହ ମୋର ସଂପର୍କ। ନୟାଗଡ଼ ବିଦ୍ୟୁତ୍ କାର୍ଯ୍ୟାଳୟରେ ଚାକିରି ଯୋଗୁଁ ସେ ମୋର ନିକଟତର ହୋଇଥିଲେ। ଯୋଗକୁ ମୋର ସଙ୍ଗୀତ ଗୁରୁ ସ୍ୱର୍ଗତ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କ ଘର ପଡ଼ୋଶୀ ହୋଇ ଭଡ଼ାରେ ରହୁଥିଲେ। ରେଡ଼ିଓରେ ବଜା ଯାଉଥିବା ମୋର ସମସ୍ତ ଗୀତରେ ସ୍ୱର ସାର୍ କରନ୍ତି। ପ୍ରାୟ ଅଧିକାଂଶ ଗୀତ ତପନବାବୁଙ୍କର ଥାଏ, ଯେଉଁଗୁଡ଼ିକ ସାର୍ଙ୍କ ଘରେ ଏବଂ ତପନବାବୁଙ୍କ ଆଗରେ ପ୍ରସ୍ତୁତ ହୁଏ। ଦିନକର ଘଟଣା। ସାର୍ ଅନ୍ୟ କାମରେ ବ୍ୟସ୍ତ ଥିଲାବେଳେ ମୁଁ ହାର୍‌ମୋନିୟମ୍ ଧରି ତପନବାବୁଙ୍କ ଆଗରେ 'ଆସିଛି ଦେଖି ମୋ' କଳାବନଦନକୁ' ମୋ ତୁଣ୍ଡରୁ ବାହାରିଲା ତା'ପର ନା - ନା - ନା ବାହାରିଲା ବେଳକୁ କଳାବଦନକୁ ପୁଣି ବାହାରିଲା। ତା'ପରେ ତପନବାବୁ କହିଲେ - ମୋର ସୁନାର ଧନକୁ। ଏହିପରି ଗୀତର ପ୍ରଥମ ଧାଡ଼ି ସଂପୂର୍ଣ୍ଣ ହୋଇଥିଲା ପରବର୍ତ୍ତୀ ମୁହୂର୍ତ୍ତରେ ସାର୍ ଆସି ସ୍ୱର କରିବା ପରେ ଲେଖାର ବିଷୟବସ୍ତୁକୁ ମଝିରେ ମଝିରେ ସଂଶୋଧନ କଲାପରେ ତିନିଦିନ ଭିତରେ ସଂପୂର୍ଣ୍ଣ ହୋଇଥିଲା। ଏହି ଘଟଣା ୧୯୭୬ କିମ୍ବା ୧୯୭୭ମସିହା ସମୟର। ପ୍ରଥମେ ରେଡ଼ିଓରେ ବୋଲିଲି, ତା'ପରେ ପୁରୀ ଶ୍ରୀକ୍ଷେତ୍ର କଳା ପ୍ରକାଶିକାରେ, ୧୯୭୮ ମସିହାରେ କଲିକତା INRECHO Companyରେ ଡିସ୍କ ପ୍ରସ୍ତୁତ ହୋଇ ସାରା ଓଡ଼ିଶାରେ ପ୍ରସାରିତ ହେଲା। ଏହି ସମୟଠାରୁ ଆଜି ସୁଦ୍ଧା ସଂପର୍କ ଅତୁଟ ଥିଲା। ତାଙ୍କଠାରୁ ଅନେକ ପ୍ରେରଣା ପାଇ ଉତ୍ସାହିତ ଲାଗିଛି। ତାଙ୍କରି ରଚନା ସମୂହ ମୋ' କଣ୍ଠରେ ସହଜରେ ବୋଲି ହୋଇଯାଏ। ମୋ ପାଇଁ ଜଣେ ସେ ଦରଦୀବନ୍ଧୁ। ମୋ ସହିତ ମିଶିବା ସମୟ ତାଙ୍କରି ଅତି ଆନନ୍ଦର ସମୟ। ସଦାବେଳେ କହନ୍ତି - ଆପଣ ଭୁବନେଶ୍ୱର କିମ୍ବା କଟକରେ ରହିଥାନ୍ତେ କି ! କାରଣ ଏହି ଦୁଇଟି ସହର ଆପଣଙ୍କ ପରି କଳାକାର ପାଇଁ ଉପଯୁକ୍ତ ସ୍ଥାନ।

ଗୀତ ପରିବେଷଣ ନେଇ ତାଙ୍କ ସହିତ ମୋର ଅନ୍ତରଙ୍ଗ ମୁହୂର୍ତ୍ତ ବିଭିନ୍ନ ଜାଗାରେ ବିଭିନ୍ନ ସମୟରେ ଅତିବାହିତ ହୋଇଛି। ତାଙ୍କରି ଆତ୍ମାର ସଦ୍‌ଗତି ପାଇଁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି।

*ନୟାଗଡ଼*



# ଯେ ସ୍ମୃତି ଦେଲା ଏ ଦାଗ

**ମାନସ ରଞ୍ଜନ ମହାପାତ୍ର**

ତପନ ଭାଇଙ୍କୁ ଚିହ୍ନିବା ଆଗରୁ ମୁଁ ତାଙ୍କର କିଛି ଗୀତ ରେଡ଼ିଓରୁ ଶୁଣିଥିଲି। ୧୯୭୫ ମସିହା ପ୍ରଜାତନ୍ତ୍ର ବିଷୁବ ମିଳନରେ ପ୍ରସନ୍ନ ଭାଇ ତାଙ୍କୁ ଚିହ୍ନାଇ ଦେଲେ। ଆମେ ସେଠୁ ଏକାଠି ଚାଲି ଚାଲି ଗଡ଼ ଗଡ଼ିଆ ଘାଟକୁ ଆସିଲୁ। ସେତେବେଳେ ପ୍ରଜାତନ୍ତ୍ର ବିଷୁବ ମିଳନ ସରିବା ଦିନ ଉପରବେଳା ଓଡ଼ିଆ ଯୁବଲେଖକ ସମ୍ମେଳନର ମିଳନୀ ବି ଗଡ଼ ଗଡ଼ିଆ ଘାଟରେ ହେଉଥିଲା। ଏବେ ତାହା ସ୍ମୃତି।

'ଯେ ସ୍ମୃତି ଦେଲା ଏ ଦାଗ
ଜୀବନଟା ପଛ ,ସେଠି ସ୍ମୃତି ସବୁ ଆଗ'

ତପନ ଭାଇ ମତେ ତାଙ୍କର କବିତା ବହିଟିଏ ଦେଇଥିଲେ। ସେଥିରେ ଥିବା ଗୋଟିଏ କବିତାରେ ଏଇ ପଦଟି ଥିଲା ।

୧୯୭୬ ମସିହା । ମୁଁ ମେଟ୍ରିକ ପରୀକ୍ଷା ଦେଇସାରିଥାଏ ।ମୋ କକେଇ ସେତେବେଳେ ବ୍ରହ୍ମପୁରରେ ଥାଆନ୍ତି। ତାଙ୍କ ଟେଲିଗ୍ରାମ ପାଇ ବୁଢ଼ୀ ମାଆ ଓ ମୁଁ ବ୍ରହ୍ମପୁର ଗଲୁ । ମାଆ ସେଠି ରହିଲା। ମୁଁ ଏକୁଟିଆ ଫେରୁଥିଲି । କ'ଣ ଇଚ୍ଛା ହେଲା କେଜାଣି, ବାଲୁଗାଁ ଷ୍ଟେସନରେ ଓହ୍ଲେଇ ପଡ଼ିଲି। ତପନ ଭାଇ ବାଲୁଗାଁ ରେ ଇଲେକ୍ଟ୍ରି ଅଫିସରେ ଚାକିରି କରନ୍ତି ବୋଲି, ମତେ କହିଥିଲେ। ପଚାରି ପଚାରି ଇଲେକ୍ଟ୍ରି ଅଫିସରେ ପହଞ୍ଚିଲି। ଅଫିସ ଆରମ୍ଭ ହେଇନଥାଏ ।ପାଖ ଚା ' ଦୋକାନରୁ ଭାଇଙ୍କ ଘର ଠିକଣା ନେଲି ।ବେଶି ବାଟ ନୁହେଁ। ମତେ ସକାଳୁ ସକାଳୁ ଦେଖି ତପନ ଭାଇ ଆଶ୍ଚର୍ଯ୍ୟ। ତାଙ୍କ ବାପା ପଦ୍ମଚରଣ ପଟ୍ଟନାୟକ ସେତେବେଳେ ବଞ୍ଚିଥାନ୍ତି। ସେ ମଧ୍ୟ ଜଣେ ଜଣାଶୁଣା କବି ଓ ନାଟ୍ୟକାର ଥିଲେ। ତପନ ଭାଇ ବାହା ହେଇନଥାନ୍ତି।

ଆମେ ଦୁହେଁ ଜଳଖିଆ ଖାଇଲୁ। ତାଙ୍କ ସାଇକେଲରେ ବାହାରିଲୁ। ଅଫିସରେ ପହଞ୍ଚି ତପନ ଭାଇ ମତେ ପଚାରିଲେ 'କୁଆଡ଼େ ଯିବା ?'

-ଭୀମପୁର ଗଲେ ଭଲ ହୁଅନ୍ତା। ପାଇକ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ସାକ୍ଷାତକାରଟିଏ ପ୍ରସ୍ତୁତ କରନ୍ତି !





ଆମେ ଦୁହେଁ ସାଇକେଲରେ ଭୀମପୁର ଗଲୁ । ବାଣପୁରରେ ବାସନ୍ତୀ ଦାଶ ଓ ପଦ୍ମ ଦାଶ ବି ରହୁଥାନ୍ତି । ସମସ୍ତଙ୍କ ସହ ଦେଖାହୋଇ ଫେରିବା ବେଳକୁ ଅପରାହ୍ନ । ମୁଁ ପୁରୀ ଫେରିଆସିଲି ।

ତାପରେ ମୋର ଅନନ୍ତ ଯାତ୍ରା । ପ୍ରଥମେ କଟକ । ତାପରେ ଉମରକୋଟ । ଲକ୍ଷ୍ନୌ । ଭୁବନେଶ୍ୱର । ଦିଲ୍ଲୀ । ଶିଲଂ ଓ ଅବସର ପରେ ପୁରୀ ।

ଓଡ଼ିଶା ସାହିତ୍ୟ ଏକାଡେମୀଙ୍କୁ ମୁଁ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଜୀବନୀଟିଏ ପ୍ରକାଶ କରିବା ପାଇଁ ଅନୁରୋଧ କରିଥିଲି । ସେମାନେ ମତେ ଏଇ ଜୀବନୀଟି ଲେଖିବାକୁ କହିଲେ ।ମୋ ପାଖରେ ଯାହା ତଥ୍ୟ ଥିଲା , ତାହା ମତେ ବହୁତ କମ୍ ଲାଗିଲା । ତପନ ଭାଇ ସେତେବେଳେ ପୁରୀରେ ଆମ ଘର ପାଖରେ ମଙ୍ଗୁବନ ରେ ରହୁଥାନ୍ତି । ମତେ ତାଙ୍କ ଘରେ ଦେଖି ଭାଇ ଭାରି ଖୁସି ହେଲେ ।ସେ ଗୋଟିଏ ପ୍ରକାଶନ ସଂସ୍ଥା କରିଥିଲେ , ତାହା ତରଫରୁ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଜୀବନୀଟିଏ ପ୍ରକାଶ ପାଇଥାଏ । ମତେ ସେ ବହିଟି ତପନ ଭାଇ ଦେଲେ ।

ସେ ବହିଟି ଏତେ ଭଲ ଥିଲା ଯେ ମୋର ଆଉ ନୂଆ ବହିଟିଏ ଲେଖିବାକୁ ଇଚ୍ଛାହେଲା ନାହିଁ । ତପନ ଭାଇଙ୍କ ସ୍ମୃତି ଭାବରେ ସେ ବହିଟି ଏବେବି ମୋ ପାଖରେ ଅଛି ।

ଗତ ଅର୍ଦ୍ଧ ଶତାବ୍ଦୀ ଭିତରେ ମୋର ତପନ ଭାଇଙ୍କ ସହ ବିଭିନ୍ନ ସ୍ଥାନରେ ଦେଖାହୋଇଛି । ଏକମାତ୍ର ଅବସୋସ , ନ୍ୟାସନାଲ ବୁକ୍ ଟ୍ରଷ୍ଟ ଭଳି ଭାରତର ସର୍ବୋଚ୍ଚ ସରକାରୀ ପ୍ରକାଶନ ସଂସ୍ଥାରେ ରହି ମଧ୍ୟ ମୁଁ ତାଙ୍କ ପାଇଁ କିଛି କରି ପାରିଲି ନାହିଁ ।ସେ ବି ଅଜବ ମଣିଷ ।ନିଜ ପାଇଁ ବା ନିଜ ପରିବାର ଲୋକମାନଙ୍କ ପାଇଁ କେବେ କାହାକୁ କିଛି କହୁନଥିଲେ ; ଯଦିଓ ବହୁ ବଡ଼ ବଡ଼ ଲୋକେ ତାଙ୍କୁ ବ୍ୟକ୍ତିଗତ ଭାବେ ଜାଣିଥିଲେ ଓ ଭଲ ପାଉଥିଲେ ।

'ସାଗର ରହିଲା ଦୂରେ, ସହରର ଆରପାରେ
ଦୂର ଗାଁ ଗିରି ନଈ, କେମିତି ଚିହ୍ନିଲା ତାରେ'

ସେ ନଈ ଏବେ କେଉଁଠି କେଜାଣି !!

*ମଧୁବନ ଷଷ୍ଠ ଗଳି, ଇନ୍ଦ୍ରଦ୍ୟୁମ୍ନ ଛକ, ପୁରୀ - ୭୫୨୦୦୨*
*୯୮୯୧୯୪୬୧୭୮*





# ଚିରାୟତ ଚିର ଅନୁରକ୍ତ

ପୁରୁଷୋତ୍ତମ ମହାପାତ୍ର

ଶେଷ ଇଚ୍ଛା
ହଜିଯିବ ପ୍ରକୃତି କୋଳରେ
ଅତିପ୍ରିୟ ଚିଲିକାର ପବନର ସୁରେ
ଯେଉଁଠି ଦିନେ ଝରି ପଡୁଥିଲା
କାବ୍ୟିକତା ଅନୁରକ୍ତିର ବାତ୍ସଲ୍ୟମୟ ଝରା ଶେଫାଳୀ
ସମୟକୁ ପଛକରି ବହଳ ରାତ୍ରିର ଅନ୍ଧାରେ !

ଏଇ ମୁହଁ ସେଇ ମୁହଁ ନୁହେଁ
ଯାହା ରାଜକୀୟ ଠାଣିରେ ରୁଚିମନ୍ତ ହସନ୍ତ
ଏବେ ରକ୍ତହୀନ ଶେତା ପାଣ୍ଡୁର ଅନୁଜ୍ଜ୍ୱଳ
ଛାତି ତଳ ହାଣି ହୋଇଯାଏ ଭାବି ବସିଲେ ।
ସେଦିନର ଖଟିରେ ଛଳଛଳ କେତେ ଅନୁରାଗଭରା
ଯିଏ ଦେଖିଛି ଭୁଲିପାରିବନି ସେଇ ଥମ୍‌ଥମ୍ ମୁହଁ
ସଭିଙ୍କୁ ଏକାଠି କରିବାରେ କେତେ ଉଚ୍ଛଳ ପ୍ରୀତିପ୍ରଦ !

ସାରା ଜୀବନ ନୀଳ ସରସ୍ୱତୀଙ୍କୁ କଣ୍ଠରେ ବସାଇ
ରଚିଗଲ ଅସୁମାରି କାବ୍ୟ କବିତା ନାଟକ ଉପନ୍ୟାସ
ଗୀତ ଗୀତିରେ କିଣିନେଲ କେତେ ମନ ନାହିଁ ଅବସୋସ
ତୁମେ ଗଲାପରେ ସବୁ ମନେପଡ଼େ – କହୁଥିଲ
ସୃଷ୍ଟି ରହସ୍ୟ ବୁଝିବା ଲାଗି ଲୋଡ଼ା ନାହିଁ ଧନ, ଲୋଡ଼ା ସ୍ୱାଭିମାନ
ତୁମ ପରେ କିପରି ବଞ୍ଚିବେ ପତ୍ନୀ ପୁତ୍ର ବନ୍ଧୁ ସହୋଦର
ଲାଗୁଚି ସବୁରି ଭିତରେ ଲୁଚି ରହିଚି ଭଲପାଇବା ନିରବଧି ନିରନ୍ତର ।

ମୋ : ୯୯୩୭୪୧୬୨୧୬







# ତପନ: ଫେରିଆସ !

**ଡ଼. କିଶୋର ମହାନ୍ତି**

ପୂର୍ବାକାଶରେ ଲାଲିମା ଭରିଦେଇ ଏତେ ଶୀଘ୍ର ତପନଙ୍କର ଅସ୍ତାଚଳକୁ ଯାତ୍ରା ଏହା ସତରେ ବିଶ୍ୱାସ ହେଉ ନାହିଁ । ଅଛି ନାହିଁର ଦ୍ୱନ୍ଦ୍ୱ ଭିତରେ ଏ ମନ ବାରମ୍ବାର ପ୍ରଶ୍ନ କରୁଛି କାହାର ଜଣକର ଚିରପରିଚିତ ମୁହଁର ଉପସ୍ଥିତି । ପଂଚଭୂତରେ ଲୀନ ହେଇ ଯାଇଥିବା ଏ ଦେହ ସତରେ କଣ ଆଉଥରେ ଫେରି ଆସେ ଆମ ଏଇ ସବୁଜ ବଳୟ ଭିତରକୁ ! କବି ଲେଖେ, ଲେଖେ ନିଜ ପାଇଁ କେବଳ ନୁହେଁ ସଚରାଚର ବିଶ୍ୱବାସୀଙ୍କ ପାଇଁ – ତେଣୁ ତ ସେ ଅମର । ସତରେ ଅମର ହେଇ ରହିବେ ତପନ ଆମମାନଙ୍କ ଭିତରେ ବାନ୍ଧିଦେବ ସବୁରି ମନକୁ ତାଙ୍କ ଶବ୍ଦର ମୋହନ ମନ୍ତ୍ରରେ – " ଆସିଚି ଦେଖି ମୋ କଳାବଦନକୁ, କଳା ବଦନକୁ ମୋର କାଳିଆ ଧନକୁ – ହେଲେ ତପନ ପଟ୍ଟନାୟକ – ତପନ ପଟ୍ଟନାୟକ । ସୁନ୍ଦୁ କବିଟିଏ – କବିତା ପାଇଁ ଜନ୍ମ ନେଇଥିଲା ଏ ଧରାରେ ସେ ଗୁଡ଼ିଏ ଗୀତରେ ବିମୋହିତ କରିବା ପାଇଁ । ଖୁବ୍ ଭଦ୍ର, ଅମାୟିକ ଖୁବ୍ ସରଳ ନିରାଡ଼ମ୍ବର ଲୋକଟିଏ । ଲୋକଟିଏ ଏତେ ଭଲ ଭଲ ଗୀତ ଲେଖେ ଟିକିଏ ତା ଭିତରେ ଗର୍ବ କି ଅହମିକା ନଥାଏ । ଯାହା ମୁଁ ଜଣେ ତାଙ୍କର ଦରଦୀ ବନ୍ଧୁ ଭାବରେ ତାଙ୍କୁ ପାଖରୁ ଦେଖିଛି । ଆକାଶବାଣୀ ପରିସର ଭିତରେ ତାଙ୍କୁ ଦେଖି ଦେଲେ ଛାତି କୁଣ୍ଢେମୋଟ ହୋଇଯାଏ ତାଙ୍କ ଓଠରେ ଚେନାଏ ମିଠାମିଠା ହସ ଦେଖି । ଆକାଶବାଣୀର ବରିଷ୍ଠ ପ୍ରଯୋଜକ ସୁରେଶ ଦାସ ଓ ମୁଁ ତାଙ୍କର ଏମିତି ଘନିଷ୍ଠ ହେଇଗଲୁ କେମିତି କେଜାଣି ସେ ବାରମ୍ବାର ଡ଼ାକନ୍ତି ଚିଲିକା ତୀରରେ ଟିକିଏ ତାଙ୍କ ଗୀତର ବନ୍ୟାରେ ହଜିଯିବାକୁ । ଚିଲିକାତୀ ଆଉ ସଂଜୁବାଆ ଓ ତାଙ୍କ ଗୀତର ଆପଣାପଣ ଆମକୁ ବାନ୍ଧି ଦିଏ – ପାନ୍ଥ ନିବାସରେ ସମସ୍ତ ଆୟୋଜନ ସେ ଆଗରୁ କରି ରଖିଥାନ୍ତି । କହିବାକୁ ପଡ଼େନାହିଁ । ଗୋଟିଏ କଥା ବେଶ୍ ମନେ ପଡ଼େ ତାଙ୍କର ଗୋଟିଏ ଭଲ ଉପନ୍ୟାସକୁ ମୁଁ ନାଟକ ବିଭାଗରେ ଥିଲାବେଳେ ଜୋର ଦେଇ କହିଲି ଆପଣ ସେ ଉପନ୍ୟାସକୁ ବେତାର ନାଟକ କରି ଦିଅନ୍ତୁ । ତାକୁ ପ୍ରଚାର କରିବି । ସେ ଅମଙ୍ଗ ହେଉଥିଲେ, ମୋର ରାଗିଲା ମୁହଁକୁ ଭୁଲାଇ ପାରିଲେ ନାହିଁ । ଠିକ୍ କହିବାର ମାସକ ପରେ ଲେଖା ଆଣି ପହଂଚାଇ ଦେଲେ, ଆଉ



କହିଲେ କିଶୋର ବାବୁ ଆପଣ ଗୀତିକାର ଓ କବିକୁ ହଳ ବୁଲାଇଦେଲେ, ମୋତେ ନାଟ୍ୟକାର କରିଦେଲେ । ଖୁବ୍ ସୁନ୍ଦର ହେଇଥିଲା ସେଇ ନାଟକଟି ଅବଶ୍ୟ ତାହା ଏକ ଘଂଟାର ଥିଲା । ଏବେବି ସେ ନାଟକ ଆକାଶବାଣୀରୁ ପ୍ରଚାରିତ ହେଉଛି । ଭୁଲି ପାରୁନି ତାଙ୍କ ଚାଲି, ମିଷ୍ଟଭାଷା, ଅଳ୍ପକଥା । କିଛି ଦିନ ପରେ ଶୁଣିଲି ସେ ରୋଗରେ ପଡ଼ିଲେ। ଆଉ ଦେଖା ସାକ୍ଷାତ ନାହିଁ । ଭୁବନେଶ୍ୱରରେ ରହିଲେ। ଭଲ ହେବା ପରେ ଆକାଶବାଣୀ ଆସିଥିଲେ ହଠାତ୍ ମୋର ଦେଖା ହୋଇଥିଲେ ସେମିତି କଥା, ସେଇ ହସ..... କହିଲେ ମୁଁ ପୁସ୍ତକ ପ୍ରକାଶକ ହେଇଗଲି । ଆପଣ ବହିଟିଏ କରିବାକୁ ଦେବେ । ପାଣ୍ଡୁଲିପି ପାଇଲେ ବହି ବାହାର କରିବି। ମୁଁ ଲେଖା ଯୋଗାଡ଼ରେ ରହିଲି। ତାଙ୍କ ସହ ଭେଟ ଆଉ ହୋଇନାହିଁ । କିନ୍ତୁ କବିତାରେ ତପନଙ୍କୁ ଭେଟୁ । ଏଇ ଏବେ ଲେଖୁଥିଲେ ମୋ ଆଖିରେ ପଡ଼ିଛି। କବିତା ଲେଖୁ ଲେଖୁ ଏମିତି ଆଖି ବୁଜି ଦେବେ ବୋଲି କିଏ ବା ଜାଣିଥିଲା । ତାଙ୍କ ଦ୍ୱାରା ମୋ ବହି ପ୍ରକାଶ ପାଇ ପାରିଲା ନାହିଁ । ମୁଁ ଏବେ ଭାବୁଛି ସତରେ ଜୀବନଟା କ'ଣ ! ବାଲୁଗାଁର ବାଲ୍ମିକି କଣ ଏମିତି ମାଟିରେ ମିଶିଯିବେ ? ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ଜୀବନ କଣ ସତରେ ଅଶ୍ରୁ ଅନ୍ଧକାର, ଅବା ଢେଉ ଢେଉ ଅନ୍ଧାର । କିନ୍ତୁ ଜୀବନ ବେଳେବେଳ ତ ଝରା ଶିଶିର, ବାସ୍ପାୟିତ ସପ୍ତମ ଋତୁ, ଲାଗେ ସବୁ ଯେମିତି ଅଳୀକ ଅସ୍ଥାୟୀ - ମୃତ୍ୟୁ ହିଁ ଏକମାତ୍ର ସତ୍ୟ । ଧ୍ରୁବ ସତ୍ୟ । ତପନ ତୁମେ ଚାଲିଗଲ, ହେଲେ ତୁମେ ଲେଖି ଛାଡ଼ିଯାଇଥିବା  ଗୀତିର ମଧୁ ଝଙ୍କାର ଆଜି କୋଣ ଅନୁକୋଣ ଝଙ୍କୃତ ହେଉଛି। ତୁମେ ମରି ନାହଁ, ତୁମେ ଅମର, ଅମର କବି।

*ଅବସରପ୍ରାପ୍ତ ବରିଷ୍ଠ କାର୍ଯ୍ୟକ୍ରମ , ନିଷ୍ପାଦକ, ଆକାଶବାଣୀ, କଟକ*

*ମୋ.ନଂ-୯୪୩୭୭୨୮୪୭୫*







# ଅଶ୍ରୁଳ ତର୍ପଣ

ଡ. ରମେଶ ପାଣି

ସମନ୍ୱୟର ସମ୍ମୋହନରେ
କଟିଗଲା ଜୀବନସାରା,
ଅକ୍ଷର ସାଧନାର ଚଉହଦିରେ
ମସଗୁଲ ଥାଅ ଅହରହ
ଶରୀର ଯେ ଯନ୍ତ୍ରଣାରେ ଥରଥର
ତା' ନିଘା ନ ଥାଏ
ନଥାଏ ସଂସାରକୁ ଥଇଥାନ କରିବାର
ସାମାନ୍ୟତମ ମୋହ ବା କସରତ,
କର୍ମମୟ ଜୀବନରେ ଲହୁ ଲୁହାଣ
ହେଲେ ବି ପରବାଏ ନ ଥାଏ
ଏହା ନିରବତା କି ଅକ୍ଷମତା
ଏହା ନିସ୍ତେଜତା କି ଆଧ୍ୟାତ୍ମିକତା
ତମକୁ ଦେଖିଲେ କିଛି ବୁଝି ହୁଏନା
କବିଟେ ତ
ନିରବଧି କାଳର ମଧୁର ଆତଯାତକୁ
ଯେ ସରଳ ଭାବରେ ବୁଝାଇ ଦିଏ ଅନ୍ୟକୁ
ଅଥଚ ନିଜକୁ ମଉନି ଯାଏ ନିଜ ପାଇଁ
ତମେ ଯେ ଏହାର ଊର୍ଦ୍ଧ୍ୱରେ
ଏକ ଉଜ୍ଜ୍ୱଳ ତାରକା ଭଳି ମନେ ମନେ
ଜଳୁଥାଅ ଅଥଚ ଆଲୋକିତ କରୁଥାଅ
ଆମ ସମସ୍ତଙ୍କୁ
ହେ ମୋ'ମାଟିର ମହକ
ତମର ଅବର୍ତ୍ତମାନରେ ଏଇମାତ୍ର
ଆଞ୍ଜୁଳାଏ ଅଶ୍ରୁର ତର୍ପଣ।





# ମଗ୍ନ ମଉନ

ମିହିର ରଞ୍ଜନ ପରିଡ଼ା

"କହିବାକୁ ଯାହା ହୃଦୟରେ ଥିଲା
କିଛି କହିହେଲା ନାହିଁ,
ଏମିତି ଅନେକ ବାକି ରହିଯାଏ
ଏ ସାରା ଜୀବନ ପାଇଁ।"

ଏମିତି ଅନେକ କଥା କହିବାକୁ ଥାଏ, ମଣିଷ ନିରବିଯାଏ। ଆପଣ ବି ଚୁପ୍ ହୋଇଗଲେ, ପ୍ରାୟ ୧୯୯୮ରୁ ଏ ଯାଏ। ମଝିରେ ମଝିରେ ଦେଖା ହୁଏ। ଆମେ କଥାହେଉ ସାଧାରଣ ମଣିଷର କଥା, କବିତାର କଥା, ଆସିଲାବେଳେ ଆଣିଥାଆନ୍ତି ନିଜର ନୂଆ ପ୍ରକାଶିତ ବହିସବୁ; ସାଇତା ହୋଇ ରହିଛି। ଖାଲି ନାହାନ୍ତି କବି ତପନ ପଟ୍ଟନାୟକ।

ପ୍ରାୟ ୨୦୧୪ ମସିହା। ଭୁବନେଶ୍ୱରର ହାଇ-ଟେକ୍ ହସ୍‌ପିଟାଲ୍‌ରେ ଫୁସ୍‌ଫୁସ୍ କ୍ୟାନ୍‌ସର୍ ଜନିତ ଚିକିତ୍ସା ପାଇଁ ଆଡ୍‌ମିସନ୍ ନେଇଥାଆନ୍ତି। ଭେଟିବାକୁ ଗଲି। ମୋ ସାଥିରେ ଥିଲେ ଜଣେ କବି। କ୍ୟାନ୍‌ସର୍ ଚିକିତ୍ସା ବ୍ୟୟ ବହୁଳ ହୋଇଥିବାରୁ ମୁଁ ପ୍ରସ୍ତାବ ରଖିଲି ସାହାଯ୍ୟ ପାଇଁ ସାହିତ୍ୟିକମାନଙ୍କୁ ନିବେଦନ କରିବା ପାଇଁ । ହାତ ଯୋଡ଼ି ମନା କଲେ ତପନ ବାବୁ। ଏତେ ଅଭାବ ଭିତରେ ବି ତଥାପି ଏତେ ସ୍ୱାଭିମାନ।

କ୍ୟାମୋଥେରାପି ପ୍ରଭାବରୁ କିଡ୍‌ନି ଖରାପ ହେଲା। ବର୍ଷ ବର୍ଷ ଧରି ଡାଏଲିସିସ୍ ଚାଲିଥାଏ। ୨/୩ ବର୍ଷ ତଳେ ତାଙ୍କୁ ଦେଖିବାକୁ ପୁରୁଣା ଭୁବନେଶ୍ୱରରେ ସେ ରହୁଥିବା ଘରକୁ ଗଲି। ସାଥିରେ ଥିଲେ ଦୁଇଜଣ ସୁସାହିତ୍ୟିକ। ବ୍ୟୟବହୁଳ ଡାଏଲିସିସ୍‌ର ଖର୍ଚ୍ଚ ତୁଲାଇବା ପାଇଁ ସେତେବେଳକୁ ତାଙ୍କ ପୁଅ ବାଲୁଗାଁରେ ତାଙ୍କର ଥିବା ଜମି ବିକିବାର ବ୍ୟବସ୍ଥା କରି ଫେରିଥାଏ। ଭାରି ମନେପଡ଼େ ତାଙ୍କର ସ୍ୱାଭିମାନ ଏବଂ ଏ ପୃଥିବୀ ପାଇଁ ମୋହ। ଏତେ ଦୁଃଖବେଳେ ସବୁବେଳେ ବର୍ଷ ବର୍ଷ ଧରି ସେବା କରୁଥିବା ତାଙ୍କର ସହଧର୍ମିଣୀ ଆଉ ଶ୍ରବଣ କୁମାର ପରି ପୁଅପାଇଁ ମନ ଭିତରେ ଶ୍ରଦ୍ଧା ଏବଂ ସମ୍ମାନର ସ୍ଥାନଟିଏ ସବୁଦିନ ରହିବ। 





# ପ୍ରିୟ କବି ବନ୍ଧୁ ତପନ ପଟ୍ଟନାୟକଙ୍କ ସ୍ମୃତିରେ

**ସୌଭାଗ୍ୟବନ୍ତ ମହାରଣା**

ମୋ’ ସମସାମୟିକ ଦରଦୀ କବି ତପନ ପଟ୍ଟନାୟକଙ୍କ (୧୯୫୧-୨୦୨୩) ମରମୀ କବିତା ଓ ଗୀତିକବିତା ଶୁଣି ମୁଁ ଅତ୍ୟନ୍ତ ବିହ୍ୱଳ ହୋଇ ଯାଇଥିଲି। ଆମ ଦୁହିଁଙ୍କର ଏକାବର୍ଷ ୧୯୫୧ରେ ଜନ୍ମ ହୋଇଥିବାରୁ ତାଙ୍କ ପ୍ରତି ମୋ’ ଘନିଷ୍ଠତା ଓ କାବ୍ୟପ୍ରାଣତା ଏକ ନୂଆ ଦିଶା ସୃଷ୍ଟି ରଚିଥିଲା। କ୍ୟାନ୍‌ସର୍, କିଡ୍‌ନି ଭଳି ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ହୋଇ ସେ ଆମ ଗହଣରୁ ଚିର ବିଦାୟ ନେଲେ ମାର୍ଚ୍ଚ ୧୪ ତାରିଖ ଅପରାହ୍ଣ ୪ଟାବେଳେ। ତାଙ୍କ ବିୟୋଗରେ ମୁଁ ଗଭୀର ମର୍ମାହତ। ସେ ଗୀତିକବିତାର ଏକ ଅବିସ୍ମରଣୀୟ ସ୍ରଷ୍ଟା ଥିଲେ ଯାହାଙ୍କ କଲମରୁ ସର୍ଜନାଲାଭ କରିଥିଲା ସ୍ୱରଲିପି, ଅସରା ଲୁହ, ଅଭୁଲା ଗୀତ, ଧୂପ, ଦୀପ, ନୈବେଦ୍ୟ ଭଳି ହୃଦୟସ୍ପର୍ଶୀ ଗୀତିଗୁଚ୍ଛ। ତାଙ୍କ ଲିଖିତ ଭଜନ “ମୁଁ ଆସିଛି ଦେଖି ମୋ’ କଳା ବଦନକୁ” ଏବେ ମଧ୍ୟ ପାଠକ ଓ ଶ୍ରୋତାମାନଙ୍କୁ ଅଭିଭୂତ କରିଦିଏ। ମୁଁ ଭୁବନେଶ୍ୱର ଜୀବନ ବୀମା କାର୍ଯ୍ୟାଳୟରେ ତିନିବର୍ଷ (୨୦୦୬-୨୦୦୮) ଏ.ଏମ୍.ଡି ଥିବାବେଳେ ତାଙ୍କ ସହିତ ପ୍ରାୟ ଚାରିଥର ଭେଟ ହୋଇଥିଲା ଭୁବନେଶ୍ୱର ପୁସ୍ତକ ମେଳାରେ ଏବଂ ପୁରୁଣା ବସ୍‌ଷ୍ଟାଣ୍ଡ ସାହିତ୍ୟ ଖଟିରେ। ସେ ଏକଦା ମୋତେ କହୁଥିଲେ ତାଙ୍କ ଲିଖିତ “ମୁଁ ଆସିଛି ଦେଖି ମୋ’ କଳା ବଦନକୁ” ନିଜ ରେଳଯାତ୍ରା ବେଳେ ଜଣେ ଅନ୍ଧ ପିଲା ଗୀତ ଗାଇବା ଦେଖି ସେ କାନ୍ଦି ପକେଇ ଥିଲେ। ମୋର ଦୁର୍ଭାଗ୍ୟ ଯେ ସେ ପୁରୀରେ ଅବସ୍ଥାନ କରୁଥିବାବେଳେ ତାଙ୍କୁ ଭେଟିବାର ସୁଯୋଗ ମୋତେ ଜଗନ୍ନାଥ ଦେଲେ ନାହିଁ, ମୋ’ କାର୍ଯ୍ୟବ୍ୟସ୍ତତା ଭିତରେ।

ତପନ ପଟ୍ଟନାୟକଙ୍କ କାବ୍ୟବୋଧ ଓ ଜୀବନ ଦୃଷ୍ଟି ଉପରେ ମୁଁ ଏକ ସଂକ୍ଷିପ୍ତ ସମୀକ୍ଷା କରିଥିଲି ଯାହା ମୋ ସମାଲୋଚନା ପୁସ୍ତକ “ସାହିତ୍ୟ : ସୃଜନ ଓ ସମୀକ୍ଷା”ରେ ସ୍ଥାନିତ ହୋଇଛି। ତାଙ୍କ କବିତାର ତନ୍ମୟଭାବ ଓ ମନ୍ମୟ ଉଚ୍ଚାରଣର ସଫଳ ଦୃଷ୍ଟାନ୍ତ ମିଳେ କାବ୍ୟ ସଂକଳନ ମଗ୍ନ ମୌନ, ଅନିନ୍ଦିତା ଓ ଅନ୍ୟାନ୍ୟ କବିତା, ଅନ୍ଧାରର ପାଦଚିହ୍ନ, ଦୁଃଖ ଗୋଟିଏ ଗାଁର ନାଁ ଏବଂ ଅରଣ୍ୟ ଗହନ



ପଥରେ ଉତ୍ତର ଅଶୀ ଓଡ଼ିଆ କବିତାରେ ତାଙ୍କ ସ୍ୱର ଓ ସ୍ୱରୂପ ପାଠକଙ୍କୁ ବିଭୋର କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ସେ ଥିଲେ ଖୁବ୍ ବନ୍ଧୁ ବତ୍ସଳ ଓ ଦରଦୀ ହୃଦୟର କବି। ତାଙ୍କ କବିତାର ଶବ୍ଦ ଓ ଶୈଳୀ ପାଠକଙ୍କୁ ମୁଗ୍ଧ କରୁଥିଲା। ତାଙ୍କ ସଖାପଣ ଓ ବନ୍ଧୁତ୍ୱ କେବେ ବି ଭୁଲିବାର ନୁହେଁ। କେଜାଣି ତାଙ୍କ ବ୍ୟକ୍ତିତ୍ୱ ଓ କବିତ୍ୱ ମୋ' ମନକୁ ବେଶ୍ ଛୁଇଁଥିଲା। ଅନ୍ୟମାନଙ୍କ ତାଙ୍କ ଉପରେ ଧାରଣା କ'ଣ ଥିଲା ଈଶ୍ୱର ହିଁ ସେ କଥା କହିପାରିବେ। ଓଡ଼ିଆ ସାହିତ୍ୟର ଜଣେ ସଫଳ କବି ଓ ଗୀତିକବି ରୂପେ ତାଙ୍କ ପ୍ରତିଭା ଅଜସ୍ର ପାଠକଙ୍କୁ ଓ ଆଲୋଚକଙ୍କୁ ମନ୍ତ୍ରମୁଗ୍ଧ କରିଛି। ତାଙ୍କ ମନୋଜ୍ଞ କାବ୍ୟଦୃଷ୍ଟି ଓ ନିଆରା ଜୀବନବୋଧ ଓଡ଼ିଆ କାବ୍ୟ ଦିଗନ୍ତକୁ ଉଜ୍ଜ୍ୱଳ ଓ ଉର୍ଜସ୍ୱଳ କରିବ ବୋଲି ଆଶା କରାଯାଏ। ତାଙ୍କ ଏକାଦଶାହ (୨୫.୦୩.୨୩) ଅବସରରେ ମୋର ଶ୍ରଦ୍ଧାର୍ଘ୍ୟ ଅର୍ପଣ କରିବା ସହ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଛି। ଓମ୍ ଶାନ୍ତିଃ।

*ମୋ : ୯୪୩୭୪୫୭୭୩୬*












# ହଜିଯାଇଥିବା ଦୀର୍ଘ ଅତୀତ

**ସୂର୍ଯ୍ୟ ଦେଓ**

'ତୁମେ ହଜିଯାଇଥିବା ଦୀର୍ଘ ଅତୀତଟିଏ, ବୁଝିବାକୁ ଯାଇ ବୁଝିପାରିନାହିଁ ତୁମେ କିଏ ତୁମେ କିଏ ?'

ଏବେ ତମେ ନଥିବା ବେଳେ ତମେ ଲେଖିଥିବା ଏଇ ଗୀତ ବାରମ୍ବାର ମନେପଡୁଛି ତପନ ଭାଇ ! ତମର ମନେ ଥିବ କି ନାହିଁ ଅନେକଥର ଅମାବାସ୍ୟା ଗାଢ଼ ଅନ୍ଧାର ଆଉ ଚିଲିକାକୁ ଅନୁଭବ କରିବାକୁ ଆମେ ଚିଲିକା କୂଳରେ ରାତି ବିତାଇଛୁ । ତମେ ଅଦ୍ଭୁତ ଥିଲ, ଜହ୍ନରାତି ଅପେକ୍ଷା ଚିଲିକାର ଅମାବାସ୍ୟା ରାତି ତମକୁ ଭଲ ଲାଗୁଥିଲା । ଅଥଚ ଲେଖୁଥିଲ ଜହ୍ନରାତିକୁ ନେଇ ରାଶି ରାଶି ପ୍ରେମ କବିତା ! ପଚାରିଲେ କହୁଥିଲ : ଅନ୍ଧାରକୁ ଭଲ ନ ପାଇଲେ ଆଲୁଅକୁ ଅନୁଭବ କରିହୁଏନାହିଁ !

ନା ! ତମକୁ ମୁଁ ବୁଝିପାରିନାହିଁ କେବେ ବି !

'ମୁହଁ ସଞ୍ଜର ଆକାଶରେ ତମେ ରକ୍ତିମ ରାଗ ଢ଼ାଳି, ରାତି ଅନ୍ଧାରରେ ଝରାଇ ଦେଇଛ କାଳିମାର ଯେତେ କାଳି' ଗୀତର ଏମିତି ଧାଡ଼ି ବୋଧେ ସେମିତି ଗାଢ଼ ଅନ୍ଧାର ରାତିରେ ତମେ କହିଥିଲ ଓ ପରେ ସେ ଗୀତ ଆକାଶବାଣୀରେ ପ୍ରସାରିତ ହୋଇଥିଲା । ବୋଧେ ଜୟଶ୍ରୀ ଦାସ ସେ ଗୀତକୁ ଗାଇଥିଲେ ନା କ'ଣ !

ତମର ଖିଆଲ ବି ଅଦ୍ଭୁତ, ତମର ରୁବାବ୍ ବି ଅଦ୍ଭୁତ । ଗୋଟିଏ ଗୋଟିଏ ବହିର ତିନିଟି କପି ତମେ କିଣୁଥିଲ, ଗୀତ ରେକର୍ଡ କି କ୍ୟାସେଟ୍‌ର ବି ତିନିଟି କପି କିଣୁଥିଲ ଏକାଥରକେ ! ଦୁଇଟିକୁ ଜରି ମଡ଼ାଇ ଆଲମିରାରେ ସାଇତି ରଖୁଥିଲ, ଆଉ ଗୋଟିଏ ରହୁଥିଲା ପଢ଼ା ଟେବୁଲ ଉପରେ । ତମ ଘରସାରା ବହି ଖାଲି ବହି, ଗ୍ରାମୋଫୋନ୍ ରେକର୍ଡ, ଖାଲି ରେକର୍ଡ କି କ୍ୟାସେଟ୍ ଖାଲି କ୍ୟାସେଟ୍ । କେତେ ପଢୁଥିଲ, କେତେ ଶୁଣୁଥିଲ ତମେ ! ଏ କଳାଟି ତମଠୁ ଶିଖିଛି । କିନ୍ତୁ ଅଦ୍ଭୁତ କଥା ହେଉଛି ନିଜ ପାଣ୍ଡୁଲିପି ତମେ ବାରମ୍ବାର ହଜାଇଦେଉଥିଲ । ନିଜ ଲେଖା ପ୍ରତି ତମେ ବହୁତ ବେଶି ଅନ୍ୟମନସ୍କ, ଅନ୍ୟର ଲେଖାପ୍ରତି ତମର ବେଶି ଅନୁରାଗ ! ମୋର ମନେହୁଏ ତପନ ଭାଇ, ନିଜର ମହାର୍ଘ ପାଣ୍ଡୁଲିପି ସଂଚୟକୁ ହଜିଯିବାକୁ



ଠେଲିଦେଇ ପାରୁଥିବା କବିର ଶୂନ୍ୟପାତ୍ରରେ ରାଶିରାଶି ଗ୍ରନ୍ଥ ଓ ପ୍ରସ୍ତ ପ୍ରସ୍ତ ଯଶ କାଣିଚାଏ ବି ହୁଏନାହିଁ !

ତମକୁ ନେଇ ମୋର କେତେକେତେ କଥା ଅଛି, ଯାହାକୁ ଆଉ କାହା ସହ ବାଂଟି ହେବନାହିଁ । ତମର ମୋ ପ୍ରତି କେତେକେତେ ଅଭିମାନ ଥିଲା ଓ ତମେ ନ ଥିଲା ବେଳେ ବି ଅଛି । ସେସବୁ କଲବଲ ଭାବ ଆଉ କାହାକୁ କହିହେବନାହିଁ । ତମର ଚପଳତା, ତମର ଭଲପାଇବା, ତମର ଦୈନ୍ୟ, ତମର କ୍ଷୋଭ, ତମର ବିଷାଦ, ତମର ଅଭିସାର, ତମର ରହସ୍ୟ, ତମର ଐଶ୍ୱର୍ଯ୍ୟକୁ ତମେ ମୋ' ଭିତରେ ରୋପିଥିଲ । ଯେମିତି କି ମୋ' ଭିତରେ ତମେ ଥିଲ । ତମ ଭିତରେ ବି କିଛି କିଛି ମୁଁ ଥିଲି । କହିବାରେ ଦ୍ୱିଧା ନାହିଁ ମୁଁ କିଛିକିଛି ସ୍ୱାର୍ଥପର ଥିଲି । ତମେ ଗଲାପରେ ସେସବୁ ମୋ ସହ ମଶାଣିକୁ ଯିବ ।

ତମେ ମୋ ପାଇଁ ବ୍ୟଥାର ନାୟକ ବି, ରୋମାଂଚ ଓ ପ୍ରଣୟର ନାୟକ ବି ! ଜୀବନର କ୍ଲେଶକୁ ଭୋଗିଛ ଓ ଭୁଲିଯାଇଛ । ଐଶ୍ୱର୍ଯ୍ୟକୁ ଭୋଗିଛ ଓ ମନେରଖିଛ । ପୀଡ଼ା, ଆସକ୍ତି ଓ ପରମାର୍ଥର ଶୁଦ୍ଧଭାବକୁ ତମେ ମୋତେ ଚିହ୍ନାଇଥିଲ । ତମର ଗୀତର ଧାଡ଼ିକୁ ଗପକରି ତମକୁ କହୁଛି: ଅତୀତକୁ ନେଇ ସମୟ ଦେହରେ ସପନ ବୁଣିବାର ସାମର୍ଥ୍ୟ ତମର ଥିଲା ଓ ତମେ ତାକୁ ମୋ ଭିତରେ ରୋପିଥିଲ ।

ସେହି ଚିହ୍ନାଚିହ୍ନିକୁ ନେଇ କେତେକେତେ ଦୀର୍ଘ ଅତୀତ, ସ୍ମୃତି ଓ ଘଟଣା ଅଛି । ଥରେ କେମିତି ଶୀତ ରାତିରେ ବାଣପୁର ପାଖ ଅଚିହ୍ନା ଗାଁରେ ମୋତେ ଏକା ଛାଡିଦେଇ ଆସିଥିଲ ଓ ସ୍କୁଟରରେ ତମ ପଛରେ ମୁଁ ଅଛି ଭାବ ତମେ କବିତା ଶୁଣାଇ ଶୁଣାଇ ବାଲୁଗାଁ ଯାଏ ଆସିଲାବେଳକୁ ଜାଣିଲ ମୁଁ ନାହିଁ ଓ ଫେରିଲ ।

ଏବେ ବି ମୁଁ ତମ ପଛରେ ନାହିଁ ତପନ ଭାଇ ! ତମେ ଫେରନ୍ତ ନାହିଁ ?









# ସାନୁର ଡାଏରି ଓ ତପନ ଭାଇ :

ଡ. ରଜନୀରଞ୍ଜନ ଦାଶ

ସାନୁର ଡାଇରିରେ ଥିଲା ଗୋଟେ ଫଟୋ ଆଉ ଗୋଟେ ଠିକଣା - ତପନ ପଟ୍ଟନାୟକ, ବାଲୁଗାଁ, ଖୋର୍ଦ୍ଧା । ଚମକି ପଡ଼ିଲି । ସାନୁ କାହିଁକି ତପନ ପଟ୍ଟନାୟକଙ୍କ ଫଟୋ ଆଉ ଠିକଣା ରଖିଛି ? ସେଇ ମୁହୂର୍ତ୍ତରେ 'ମୁଁ ଆସିଛି ଦେଖି ମୋ କଳା ବଦନକୁ' ର ଗୀତିକାର ତପନ ପଟ୍ଟନାୟକ ମୋ ପାଇଁ ପାଲଟିଗଲେ ଜଣେ ଖଳନାୟକ । ତା'ପରେ ତପନ ଭାଇଙ୍କୁ ଧରି ବନ୍ଧୁ ତାରକ ମହାନ୍ତି ପହଞ୍ଚିଗଲେ ବାଳକାଟି କଲେଜରେ ଦିନେ ମୁହଁସଂଜରେ । ପ୍ରଥମ ଦେଖାରେ ପ୍ରଥମ ସମ୍ଭାଷଣ : ରଜନୀ କେମିତି ଅଛୁ ! ଏଇ କଥା ପଦକରେ ଏତେ ଆତ୍ମୀୟତା ଭରି ରହିଥିଲା ଯେ ସେହିଦିନଠାରୁ ତପନ ଭାଇ ମୋର ଆପଣାର ମଣିଷଟିଏ ବନିଗଲେ । ଅନେକ ଥର ଭେଟ ସାହିତ୍ୟ ସଭାରେ, ବସ୍ ଷ୍ଟାଣ୍ଡ୍ ଖଟିରେ, ବାଲୁଗାଁରେ, ପୁରୀ ସମୁଦ୍ର ବେଳାରେ । ଚଳଚ୍ଚିତ୍ର ଚକ୍ରବ୍ୟୂହ ପାଇଁ ଅଜିତ୍ ଭାଇ (ଦାଶ ମହାପାତ୍ର) ଓ ମୁଁ ଗୀତଲେଖାରେ ବସିଥାଉ । ଅଜିତ ଭାଇ ତପନ ଭାଇଙ୍କୁ ଡାକିଲେ ଗୀତ ଚଳଚ୍ଚିତ୍ରରେ ଲେଖିବା ପାଇଁ । ମାତ୍ର ସେ ଆଗ୍ରହ ପ୍ରକାଶ କଲେ ନାହିଁ ।

ଦେହ ଖରାପ ହେବାରୁ ଆଉ ବିଶେଷ ଦେଖା ହୋଇ ପାରୁ ନଥିଲା । ତାଙ୍କ ଉପରେ ଦୁଇଟି ଗପ ଲେଖିଥିଲି । 'ଧ୍ୱନି ପ୍ରତିଧ୍ୱନି'ରେ ପଢ଼ି ମତେ ଫୋନ୍ କରିଥିଲେ । କଥାଥିଲା ମୁଁ ଦେଖା କରିବି । ହେଲେ ସେ ଚାଲିଗଲେ ।

ସାନୁ ଡାଏରିରେ ତାଙ୍କ ନାଆଁ ଓ ଠିକଣା କଥାଟା କେବେହେଲେ ଭରସି ତାଙ୍କୁ ପଚାରି ପାରିଲିନି । ସେ କଥାଟା ସେମିତି ରହସ୍ୟମୟ ହୋଇ ରହିଗଲା ।

ଯୋଉଠି ଥାଅ ଭଲରେ ଥାଅ । ଆମକୁ ଅମୃତ ପରଷୁ ଥାଅ ଭାଇ ।







# କାଳିଆ ଧନ

ପୂର୍ଣ୍ଣଚନ୍ଦ୍ର ମହାରଣା

କିଏ ଆଉ ବଖାଣିବ
କାଳିଆ ଧନର ଗୁଣ,
କିଏ ଆଉ କହିବ
ଯେମିତି ହେଲେ ଦେଖିବି
ସେଇ କାଳିଆ ବଦନ
ହେଲା କି ନହେଲା କେଜାଣି ଦର୍ଶନ
ତମେ ଜାଣିଥିବ !!

ଭିତରେ ଭିତରେ କିନ୍ତୁ
ତମେ ଭଲ ପାଉଥିବ
ଚିଲିକାର ନେଳିଆ ପାଣିକୁ
ମାଛରଙ୍କାର ତରକା ପଣକୁ
ହଂସ, ହଂସରାଳି, ଏରା
ଗେଣ୍ଡାଳିଆର ଡେଣାତଳେ
ହଜିହଜି ଯାଉଥିବା
ଗୋଟେ ଲୋହିତ ସୂର୍ଯ୍ୟାସ୍ତକୁ !!

ଏବେ ସବୁ ସ୍ଥିର
ଯିଏ ଯୋଉଠି ସେଇଠି
ହେଲେ ତମେ ନାହିଁ
ଲେଖିବାକୁ ଗୀତ
ଜୀବନ ମରଣ ସଙ୍ଗୀତ
ଭଜନ, ଜଣାଣ
କାଳିଆ ଧନ କଳା ବଦନ !!

*ବାଲକାଟି, ଖୋର୍ଦ୍ଧା-୭୫୨୧୦୦*







# ଅସ୍ତମିତ ତପନ

**ଅନ୍ନପୂର୍ଣ୍ଣା ମହାନ୍ତି**

ଖୋର୍ଦ୍ଧାର ସୁପରିଚିତ ରାମେଶ୍ୱର ପାଣ୍ଠିକା । ଖୋର୍ଦ୍ଧାର ଏକ ସାହିତ୍ୟାନୁଷ୍ଠାନ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ମିଳିତ ଆନୁକୂଲ୍ୟରେ ବର୍ଣ୍ଣାଢ଼୍ୟ ତ୍ରିଦିବସୀୟ ସାହିତ୍ୟ ମହୋତ୍ସବ । ସେଥିରେ ମୁଁ ଓ ଅପର୍ଣ୍ଣା ମହାନ୍ତି ଯୋଗଦେବାକୁ କବି, ଗାଳ୍ପିକବନ୍ଧୁ ଅଜୟ ସ୍ୱାଇଁଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଯାଇଥିଲୁ । ଏକାଡେମୀର ନିମନ୍ତ୍ରଣ ପତ୍ର ମଧ ପ୍ରାପ୍ତ ହୋଇଥିଲା ।

ସୁସଜ୍ଜିତ ବିରାଟ ମଞ୍ଚ । ଶୁଣିଲୁ ଏ ଉତ୍ସବ ଆୟୋଜନରେ ସେତେବେଳର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ପ୍ରଚ୍ଛନ୍ନ ସହଯୋଗ ଓ ଆନ୍ତରିକତା ଥାଏ । ତେଣୁ ସବୁକିଛି ଆଡ଼ମ୍ବରପୂର୍ଣ୍ଣ ଥିଲା ।

ଦ୍ୱିତୀୟ ଦିବସର ପ୍ରଥମ ଅଧିବେଶନରେ ଯୋଗଦେଲୁ । ଓଡ଼ିଶାର ବହୁ ଖ୍ୟାତନାମା କବି, ଲେଖକଙ୍କର ସମାବେଶ ହୋଇଥାଏ । ସେତେବେଳର ଏକାଡେମୀ ସଚିବ ଶ୍ରୀ ହରପ୍ରସାଦ ପରିଚ୍ଛାପଟ୍ଟନାୟକ ଜଣ ଜଣଙ୍କ ପାଖକୁ ଯାଇ ଖାଇବା ଓ ରହିବାର ତତ୍ତ୍ୱାବଧାନ କରୁଥାନ୍ତି ।

ସଭା ଆରମ୍ଭ ହୋଇନଥାଏ, ଲଞ୍ଚ୍ ପରେ ଗୋଟିକିଆ ଚେୟାର୍‌ଟିରେ ବସିଥାଏ । ମୋ ପାଖକୁ ଚେୟାର ଟାଣି ନେଇ ତପନବାବୁ ବସିଗଲେ । ହ୍ୟାଲୋ ! ହାଏ ! ଅଳ୍ପ ହସ ଓ ପରିଚୟ ଦେଲା ବେଳକୁ କହିଲି, "ମୁଁ ଜାଣେ, ଆପଣ ତପନ ପଟ୍ଟନାୟକ, ବାଲୁଗାଁ । ଆପଣଙ୍କ କବିତା ଅନେକ ପଢ଼ିଛି, ବିଶେଷ କରି ଝଙ୍କାରରେ ।" ସେ ହସିଲେ, ଉତ୍ତରରେ କହିଲେ – "ମୁଁ ବି । ଆଚ୍ଛା ଆପଣ ଆଉ ଅପର୍ଣ୍ଣା କ'ଣ ଦୁଇ ଭଉଣୀ ?" ମୁଁ ମୁଣ୍ଡ ହଲାଇ ହସିଲି – ଦୁଇ ବନ୍ଧୁ କୁହନ୍ତୁ । – ପଛପଟୁ କିଏ ଡାକଦେଲା – ତପନ ଭାଇ ! ସେ ଚାଲିଗଲେ । ଦ୍ୱିତୀୟ ଥର ନୁହେଁ ଦୁଇ ଚାରି ଥର ପ୍ରଜାତନ୍ତ୍ର ପରିସରରେ ବିଷୁବ ମିଳନରେ ଦେଖାହୁଏ । ସାମାନ୍ୟ ହସ । ଅଳ୍ପ କଥାବାର୍ତ୍ତା । କେମିତି ଅଛନ୍ତି ? କବିତା ତ ଦେଖୁଛି । ଏମିତି କିଛିରେ ସେ ଭିଡ଼ ଭିତରେ ଓ ମୁଁ ମୋ ସ୍ଥାନରେ ।



ଜଣେ ସରଳ ଅମାୟିକ ହୃଦୟର ମଣିଷ । ଓଡ଼ିଆ ସାହିତ୍ୟ ଜଗତରୁ ସେ କେବେ ଯିବେ ନାହିଁ । କବିତା ଭିନ୍ନ ତାଙ୍କର ଜଗନ୍ନାଥ ମହାପ୍ରଭୁଙ୍କୁ ନେଇ ଯେଉଁ ଦରଦଭରା ଭଜନ - "ମୁଁ ଆସିଛି ଦେଖି ମୋ'କଳା ବନଦନକୁ / କଳାବଦନକୁ ମୋ ସୁନାର ଧନକୁ" - ଏହା ତାଙ୍କୁ ସବୁଦିନ ଭକ୍ତଙ୍କ ହୃଦୟରେ ରଖିଥିବ। ତାଙ୍କର ଅବର୍ତ୍ତମାନର ଖବର ସହ ମୋର ବନ୍ଧୁ ଏହି ଭଜନଟି ପଠାଇ ମୋତେ ଅଧିକ ଶୋକାକୁଳ କରିଛନ୍ତି ।

ତପନବାବୁ ଆମ ପାଖରେ ନାହାନ୍ତି କହିବିନି । ହୃଦୟରେ ଅଛନ୍ତି । ସମସ୍ତେ ତ ଆଗପଛ ହୋଇ ଯିବା । ଯେଉଁଠି ଥାଅ ଭଲରେ ଥାଅ । ସ୍ୱର୍ଗରେ ଥାଅ । ତୁମର ଅମର ଆତ୍ମା ସଦ୍‌ଗତି ଲାଭ କରୁ । ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ସହ ପ୍ରଣାମ ନେବେ ।

*ମୋ : ୯୪୩୮୮୦୫୩୪୪*







# ତପନ ଭାଇ ସ୍ମରଣେ

ସୁକାନ୍ତ ସୁବୁଦ୍ଧି

ତପନ ଭାଇ
ନିଦେଇ ଯାଉଥିବା ରାତି
ଅଧା ଦେଖିଥିବା ସପନ
ସକାଳ ହେଲାରୁ
କିଛି ନାହିଁ
ଫର୍ଚ୍ଚା ନ ହେଉଣୁ
ଫେରାର୍ ରସାଳ ଶାଖାରୁ
କୋଇଲି
ଦକ୍ଷିଣ ଝର୍କାରୁ ମଳୟ
ଅଗଣାରୁ ବସନ୍ତ ।
ଦିନ ଅରଣା ମଇଁଷି ପରି
ଧାଉଁଛି
ବଗିଚା ସାରା ଫୁଲଗଛ
ବାରମାସ ଟିକି ଚଢେଇଟେ
ଡେଉଁଛି ଏଡାହି ସେଡାହି
କପୋତୀଟିଏ ବାହୁନୁଛି
ସେରେକ ପୂରିଲା ଯାଗାରେ
ଟୀକା ଗୋବିନ୍ଦ ଚନ୍ଦ୍ର ଗୀତ
ମାଙ୍କଡ଼ ମଉସା ବୋଲି
ମନବୋଧ ଚଉତିଶା ।

ସଂଜ ହେବାକୁ କିଛି
ସମୟ ବାକି
ତପନ ଭାଇ ତମ
ପଛରେ ରହିଗଲା
ଚିଲିକା ଚଢେଇହଗା
ସୋଲେରି ଭାଲେରି
ମାମୁଁ ଭଣଜା ଓ
ଶାଳିଆ ନଈ ।
ତମେ କୋଉଠି ଏବେ
ତପନ ଭାଇ ?
ଶ୍ରୀକ୍ଷେତ୍ରରେ
ଦେଖିବାକୁ ଯାଇଛ କି
କଳା ବଦନକୁ
ସେଇଠି ଥାଅ ଭାଇ
ଆମ କଥା ରାଣ ଖାଉଛୁ
ଭାଇ
କେବେ ହେଲେ ଆଉ
ଭାବିବ ନାହିଁ ।।



*ନୂଆ ଗାଁ, ଭୁବନେଶ୍ୱର*



# ଏଇ ମାଟିର ସଦା ଅମ୍ଳାନ ମହକଟିଏ

**ପ୍ରତିଭା ପରିଡ଼ା**

ତପନ ଭାଇ !

ଏବେ କେଉଁଠି ?

ସେମାନେ କହୁଛନ୍ତି, ଚାଲିଗଲେଣି । ଏଠାକୁ ଆଉ ଆସିବାର ନାହିଁ । ତେବେ ଦିନ ଗଣି ହିସାବ କରି କି ଲାଭ ? ସେଇ ତ ଗୋଟିଏ କଥା, 'ତୁମେ ଚାଲିଗଲଣି' ।

ମଝିରେ ଆମ ଭିତରେ ଆଉ ଟିକେ ଭେଟ ହେବାର ଥିଲା । ତୁମର ଶବ୍ଦମାୟାକୁ ପତ୍ରିକା ଉପନ୍ୟାସରେ ଦେଖି ଲାଭ କ'ଣ ?

ସଚିବାଳୟରେ ତୁମ ସହିତ ଦେଖା ହୋଇଥିଲା ଦୁଇ ଥର । କମଳବାବୁ ସାଙ୍ଗରେ ଆଣି ମୋ ପାଖକୁ ଆସିଥିଲେ । ମୁଁ ପି.ଆଣ୍ଡ ଡବ୍ଲ୍ୟୁ ଡିପାର୍ଟମେଣ୍ଟରେ ଥିବାବେଳେ । ତୁମର କିଛି ଅଫିସିଆଲ ପ୍ରୋବ୍ଲେମ୍ ଲାଗି ସେକ୍ରେଟେରିଏଟ୍ ଆସିଥିଲ ।

ସେତେବେଳେ ତୁମେ ସଂପୂର୍ଣ୍ଣ ସୁସ୍ଥ ଥିଲ । ଟିକେ ଚୁପ୍‌ଚାପ୍ ଥିଲେ ବି ହସୁଥିଲ । ଶାନ୍ତ ମଣିଷଟିଏ । ଆନ୍ତରିକତା, ଆବେଗରେ ଭରପୂର ଜୀବନର ଧ୍ରୁପଦୀଟିଏ ।

ଆଉ ତା'ର ବହୁତ ବର୍ଷ ପରେ ତୁମର ସାଂଘାତିକ ଅସୁସ୍ଥତା ଆଉ ତୁମର ଜଟିଳ ଚିକିତ୍ସା ନିମନ୍ତେ କମଳବାବୁ ଆସିଥିଲେ ସହକର୍ମୀମାନଙ୍କଠାରୁ କିଛି ସାହାଯ୍ୟର ପ୍ରତିଶ୍ରୁତି ନିମନ୍ତେ । (ଅନୁସାହିତ ନୁହେଁ, ସମର୍ଥମାନଙ୍କର ଦାୟବଦ୍ଧ ଭୂମିକାର ରୂପାୟନ ନିମନ୍ତେ) । ଗୁଣ୍ଡୁଚି ମୂଷାର ଦାୟିତ୍ୱ ଭଳି ।

ସେତେବେଳେ ମୁଁ କିନ୍ତୁ ଡରି ଯାଇଥିଲି । କାରଣ ମୁଁ ତ ଚିରରୋଗିଣୀ, ଶାରୀରିକ ଅକ୍ଷମ ମଣିଷଟିଏ । ଦେହର କଷ୍ଟ (ମର୍ମାହତ / ମାନସିକ) ମୁଁ ତ ଭୋଗି ଆସିଛି । ତେବେ ସେ ଅଧ୍ୟାୟ ତ ଅଟକି ଥିଲା ସେଥିରେ । ଆଉ କିଛି ଜାଣିବାର ଉପାୟ ନ ଥିଲା । ତା'ପରେ ତୁମେ କବିରୁ ପ୍ରକାଶକ ପାଲଟି ଯାଇଥିବାର ମୁଁ ଶୁଣିଥିଲି । ଜଣେ ଦାୟିତ୍ୱ ସଂପନ୍ନ, ରୁଚି ସମ୍ପନ୍ନ, ସମୟାନୁବର୍ତ୍ତୀ ପ୍ରକାଶକ ଭାବେ ଗଣା ବି ହୋଇଥିଲ ।

ହଁ, ମଝିରେ ଦୁଇ ତିନି ବର୍ଷ ତଳେ ତୁମର ସ୍ୱର ଫୋନ୍‌ରେ, 'ଅର୍ପିତା'ର ସଂପାଦକ ସୁବାସ ଷଡ଼ଙ୍ଗୀ ଆସିଥିଲେ ମୋ ପାଖକୁ ବହି ଦେବା ପାଇଁ । ତୁମ





ସାଙ୍ଗରେ ଫୋନ୍‌ରେ କଥା ହେଇ ହେଇ ସେ କହିପକାଇଲେ 'ମୁଁ ଏକ ପ୍ରତିଭା ...ସାମ୍ନାରେ'। ସେ ପାଖରୁ ତୁମର ସ୍ୱର "ଟିକେ ପ୍ରତିଭାଙ୍କୁ ଦିଅ। ତାଙ୍କ ସହ ଟିକେ କଥା ହେବି।"

ତା'ପରେ ତୁମ ସହ ମୋର ଯାହା ଫୋନ୍‌ରେ କଥାବାର୍ତ୍ତା। ତୁମେ ଅସୁସ୍ଥ, ତୁମର ସ୍ୱରରେ ବି ସେ ଚଞ୍ଚଳତା ନ ଥିଲା। କିନ୍ତୁ ଫୋନ୍‌ରେ ସେଇଠି ପଚାରି ବସିଲ, ମୋ ଦେହ ଅବସ୍ଥା। କାରଣ ତୁମେ ତ ଶୁଣିଥିଲ ମୁଁ ଶାରୀରିକ ଅକ୍ଷମ। ମନେପକାଏ ସେତେବେଳକୁ ମୁଁ କଳିଙ୍ଗ ହସ୍‌ପିଟାଲରୁ ଫେରିଥିବା ମଣିଷଟିଏ। ତା'ପରେ କହିଚାଲିଲ ତୁମର ଦେହ ଅବସ୍ଥା। ଶେଷରେ କହିପକାଇଲ – 'ଏମିତି ଚାଲିଛି ତ ଚାଲିଛି।' ମୁଁ ବା ଆଉ କ'ଣ କହିଥାନ୍ତି ?

ହେଲେ ଏସବୁ ଭିତରେ ତ ଏମିତି ସମୟ ସରିଯିବାର କଥା ନ ଥିଲା। ତୁମେ ବି ଲେଖି ଚାଲିଥିଲ। କବିତା, ଗୀତିକବିତା, ଉପନ୍ୟାସ ପୁଣି ଏସବୁ ଭିତରେ ପ୍ରକାଶନର ଦାୟିତ୍ୱ ବି। କିନ୍ତୁ ମୁଁ ତୁମ କବିତାକୁ ହିଁ ଭଲପାଉଥିଲି। ତୁମେ ଥିଲ ସମର୍ପଣର କବି / ମାନବବାଦର କବି / ଜୀବନର ପ୍ରତ୍ୟେକ ସ୍ତରରେ ଆଧ୍ୟାତ୍ମିକତାର ସ୍ୱର ଲେପି ଦେବାର କବି / ଜୀବନକୁ ଜିଇଁବାର କାବ୍ୟିକ ରୂପ ଦେଉଥିବାର କବି।

ହେଲେ ସବୁ ଭିତରେ ସମୟ ସରିଗଲା ନା' ସମୟ ସ୍ଥିର ହୋଇଗଲା ?

ତପନ ଭାଇ! ଏବେ ବି ଶେଷଥର ପାଇଁ ଫୋନ୍‌ରେ ଶୁଣିଥିବା ତୁମର ସେଇ ଅମର ସ୍ୱର ଆଚ୍ଛନ୍ନ କରି ରଖିଛି। ତୁମେ ଥିଲ ମାଟିର କବି। ମାଟିର ରଙ୍ଗ, ମାଟିର ମୋହ, ମାଟିର ମନ୍ତ୍ରରେ ପ୍ରଲୁବ୍ଧ କବି। ତେବେ ମାଟି କ'ଣ ମାଟିର ମଣିଷକୁ ଆବୋରି ରଖିପାରେନି ? ମୁଁ ଜାଣିନି ଏଠୁ ଗଲାପରେ ମଣିଷ ଆକାଶର ତାରା ହୋଇଯାଏ କି ନାହିଁ ?

ତପନ ଭାଇ ! ଏ ମାଟିର ମଣିଷ ଚାଲିଯିବା ପରେ ଦେହାତୀତ ହୋଇଯାଏ, ବିଦେହୀ ହୋଇଯାଏ, ଅନ୍ୟ ଅର୍ଥରେ ଦେବତା ପାଲଟିଯାଏ। ତା'ର କେହି ଆତ୍ମୀୟ ନଥାନ୍ତି କି ସେ ବି କାହାରି ଆତ୍ମୀୟ ହୋଇ ରହିନଥାଏ। ଖାଲି ମହକଟିଏ ବିଞ୍ଚି ହୋଇଯାଇଥାଏ ଏ ମାଟିରେ। ସାରା ପୃଥିବୀ ବାସ୍ନାୟିତ ହୋଇ ପଡୁଥାଏ। ତୁମେ ବି ସେଇ ଅମ୍ଳାନ ମହକଟିଏର ଆଧାର ବିନ୍ଦୁ ନା !

ତୁମର ସେହି ବିଦେହୀ ଆତ୍ମାକୁ, ଈଶ୍ୱରୀୟ ସତ୍ତାକୁ ମୋର ପ୍ରଣାମ।





# ପରଲୋକରେ ତପନ ପଟ୍ଟନାୟକ

**ଦେବେନ୍ଦ୍ର ପ୍ରସାଦ ଦାସ**

**"କେହି ରହି ନାହିଁ ରହିବେ ନାହିଁଟି, ଭବରଙ୍ଗ ଭୂମି ତଳେ**
**ସର୍ବେ ନିଜ ନିଜ ଅଭିନୟ ସାରି, ବାହୁଡ଼ିବେ କାଳ ବଳେ ।"**

ଯେତେ ଦୂର ମନେପଡୁଛି ୧୯୯୨ ମସିହା ନଭେମ୍ବର ମାସର ଏକ ଶୀତୁଆ ସନ୍ଧ୍ୟା, ମୋର ପ୍ରଥମ ସାକ୍ଷାତ୍ ହୋଇଥିଲା ତପନ ପଟ୍ଟନାୟକଙ୍କ ସାଙ୍ଗରେ, ବାଣପୁର କଲେଜ ପ୍ରାଙ୍ଗଣରେ, କଲେଜର ଏକ ଉତ୍ସବ ପାଳନ ଅବସରରେ । ସେଦିନ ତାଙ୍କ ସହ ସାକ୍ଷାତରେ ସେ ଖୁବ୍ ନିଜର ବୋଲି ଜଣା ପଡୁଥିଲେ, ଲେଖାଲେଖିରେ ତାଙ୍କର ଯେ ପ୍ରଗାଢ଼ ଆଗ୍ରହ ଥିଲା, ତାହା ମୁଁ ସେଦିନ ଜାଣିଥିଲି । ଅଳ୍ପ କିଛି ଆଳାପ ଆଲୋଚନା ପରେ ମୋ ଠାରୁ ବିଦାୟ ନେଇଥିଲେ ଓ ପରବର୍ତ୍ତୀ ସମୟରେ ନିୟମିତ ବ୍ୟବଧାନରେ ସେ ଆମ୍ଭମାନଙ୍କ ଗହଣକୁ ଆସି ତାଙ୍କର ରୋମାଣ୍ଟିକ୍ କବିତା ସବୁ ଆବୃତ୍ତି କରୁଥିଲେ । ମୁଁ ତାଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ କିଛିକିଛି କବିତା ମଧ୍ୟ ଲେଖି ତାଙ୍କୁ ପଢ଼ି ଶୁଣାଇଥିଲି, ସେ ମୋତେ ଖୁବ୍ ଉତ୍ସାହିତ କରୁଥିଲେ, ସମୟ ଗଡ଼ି ଚାଲିଥିଲା । ମୁଁ ଗୋଦାବରୀଶ ମହାବିଦ୍ୟାଳୟରୁ ବଦଳି ହୋଇ ଆଉ ଏକ କଲେଜକୁ ଚାଲିଯାଇଥିଲି ଓ ପରେ ପରେ ଓଡ଼ିଶା ପ୍ରାଶାସନିକ ସେବା ଚାକିରିରେ ଯୋଗଦାନ, କାର୍ଯ୍ୟକ୍ଷେତ୍ରରେ ନିଜକୁ ବ୍ୟସ୍ତ ରଖିବା ସହ ମୋର ଲେଖାଲେଖିରେ ଧୀମାପଣ ଓ ତାଙ୍କ ସହ ସଂପର୍କ ନ ରହିବା ହେତୁ ମୁଁ ପ୍ରାୟ ତାଙ୍କୁ ଭୁଲି ଯାଇଥିଲି । ଦୀର୍ଘ ୨୦ ବର୍ଷ ପରେ ହଠାତ୍ ଦିନେ ପୁରୀ ବଡ଼ଦାଣ୍ଡରେ ତାଙ୍କ ସହ ସାକ୍ଷାତ୍ ଆମର ସଂପର୍କକୁ ପୁନର୍ଜୀବିତ କରିଥିଲା । ତା'ପରଦିନ କେତେ ଗୋଟି କବିତା ବହି ଧରି ସେ ମୋ ସରକାରୀ କାର୍ଯ୍ୟାଳୟରେ ପହଞ୍ଚି ଯାଇଥିଲେ ଓ ସେହି ପୁସ୍ତକଗୁଡ଼ିକ କିପରି ସରକାରୀସ୍ତରରେ କ୍ରୟ କରାଯିବ, ଯାହାକି ଛାତ୍ରଛାତ୍ରୀମାନଙ୍କର ପାଠାଗାରରେ ସ୍ଥାନ ପାଇବ ସେଥିପାଇଁ ମୁଁ ଡି.ପି.ସି.ଙ୍କୁ ଡାକି କଥାବାର୍ତ୍ତା କରିଥିଲି । ସେ କିନ୍ତୁ ଏହା ତାଙ୍କ ହାତରେ ନାହିଁ ଓ ଏହା କେନ୍ଦ୍ରୀୟ ବିବେଚନା କମିଟି କରିବ ବୋଲି କହିଥିଲେ । ତପନ ପଟ୍ଟନାୟକଙ୍କୁ ମୁଁ ଭୁବନେଶ୍ୱର ସେଣ୍ଟ୍ରାଲ କମିଟିକୁ ଅନୁରୋଧ କରିବା ପାଇଁ ପରାମର୍ଶ ଦେଇଥିଲି, ହେଲେ ତାହା ହୋଇପାରିନଥିଲା । କିନ୍ତୁ ତାଙ୍କର ଓ ମୋର ବ୍ୟକ୍ତିଗତ ସଂପର୍କରେ ଭଟ୍ଟା ପଡ଼ିନଥିଲା ।







ମୁଁ ତାଙ୍କୁ ସେଭଳି ଆଖି ଦୃଶିଆ ସାହାଯ୍ୟ କରିପାରିନଥିବାରୁ ମୋ ମନରେ ଅନେକ ଅବସୋସ। ତପନ ପଟ୍ଟନାୟକଙ୍କ ଦେହାନ୍ତର ଦୁଇଦିନ ପୂର୍ବରୁ ମୁଁ ଓ ମୋର ଅଧ୍ୟାପକ ବନ୍ଧୁ ମିହିର କୁମାର ରାୟ ହସ୍‌ପିଟାଲ୍ ଯାଇ ଆଇ.ସି.ୟୁ.ରେ ଚିକିତ୍ସିତ ହେଉଥିବା ତାଙ୍କୁ ଦେଖିବାର ସୁଯୋଗ ପାଇଥିଲୁ। ଭଗବାନ ତାଙ୍କର ଆତ୍ମାର ସଦ୍‌ଗତି କରନ୍ତୁ। ସେ ଯେଉଁଠି ବି ଥାଆନ୍ତୁ ଭଲରେ ରହିଥାଆନ୍ତୁ, ଏହା ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା।







# ଗୋଟେ ଦୀର୍ଘଶ୍ୱାସ

ତାରକ ମହାନ୍ତି

ସମ୍ପର୍କର ନାଁ ନିଳାମ୍ବୁ ଚିଲିକା
ହୋଇପାରେ ହ୍ରଦ,ମଣିଷ
ଅଥବା ଈଶ୍ୱରଙ୍କ ପରି
କେହି ଜଣେ
ଯିଏ ସ୍ନେହର ପୃଥିବୀ
ପ୍ରେମର ବିଶାଳ ପର୍ବତ
ଗୋଟେ ଭୂଖଣ୍ଡର ଶ୍ରେଷ୍ଠ ଖଣ୍ଡ
ଲେଖନୀର କୋମଳ ପରଶ
ଗୋଟେ ପଟେ ସାଳିଆ ନଈ
ଆରପଟେ ବରବରା ଜଙ୍ଗଲ
ମାମୁ ଭଣଜା ପାହାଡ଼ ଖୋଲରୁ
ଯେଉଁ ଶୀତଳ ପବନ ଆସେ
ସିଏ ଆଉ କେହି ନୁହେଁ
ଦ୍ୱିତୀୟ ଈଶ୍ୱର ତପନ ପଟ୍ଟନାୟକ।

କଳାବଦନକୁ ଦେଖି ଯିବେ ବୋଲି
କେବେଠୁ ଚୁଡା ଚାଉଳ ବାନ୍ଧିଥିଲେ
ସେଇଠି ବି କାଟିଦେଲେ ଦୀର୍ଘବର୍ଷ
ଯମ ଅଦଉତି ଆରମ୍ଭ କରିଦେଲା
ବ୍ୟାଧି ବଢ଼େଇଦେଲା ଦୂରତା
କାହାକୁ କ'ଣ କହିବେ ଭାବୁ ଭାବୁ
ରାତି ପାହିଗଲା
ଅନେକ ଶବ୍ଦର ଗହଳିରୁ ମୁକ୍ତି ପାଇଁ
ବୋଧେ ପ୍ରଭୁ ଡାକିନେଲେ
ଆଜି ନହେଲେ ନାଇଁ ଫେରିବେ
ବାଣପୁର ବଜାରରେ ଖୋଜିବେ
କେଉଁଠି ଅଛି ରବି ମହାରଣା
କେଉଁଠି ତାଙ୍କ ଷ୍ଟୁଡିଓ
ପ୍ରତାପ ଗଲାବେଳେ କହିବେ
ଏଇଠି ଟିକେ ଅଟକିଯିବା ତାରକ।
କହିବାର ତ ଅନେକ ଅଛି
କିଛି କହିପାରୁନି ଏବେ
କହିବି ପୁଣି ସ୍ୱପ୍ନ ଦେଖିଲେ
କଟକ ବାଲୁବଜାର ବହି ଗଳିରେ
କିଏ ଖୋଜିବ ସତ୍ୟନାରାୟଣ
ଜଗନ୍ନାଥ ଅବା ଫ୍ରେଣ୍ଡ୍ସ୍
ଗିରିଜା ଭାଇ !
ଆଉ ନାହାନ୍ତି ତପନ ଭାଇ
ସତରେ ମୋ ପାଇଁ ଯୁଗ ଶେଷ।

*ଫୋନ : ୯୪୩୭୧୩୩୭୭୭*







# ତପନ ଭାଇ

## ରାଜକିଶୋର ଦାସ

ତପନ ଭାଇ ହଠାତ୍ ଚାଲିଯିବା ପରେ ବରିଷ୍ଠକବିମାନଙ୍କ ମଧ୍ୟରେ ଏକ ଶୂନ୍ୟସ୍ଥାନ ସୃଷ୍ଟିହେଇଗଲା। ୧୪ ତାରିଖ ଅପରାହ୍ନ ପାଖାପାଖି ୪ଟା ବେଳକୁ ପୁରୀରୁ କବି ସୁଚେତା ମିଶ୍ରଙ୍କର ଫୋନ୍ ଆସିଲା । ମୁଁ ଆଶ୍ଚର୍ଯ୍ୟ ହେଲି ବହୁଦିନପରେ ସେ କାହିଁକି ମତେ ଫୋନ୍‌କଲା । ସେ କହିଲେ ତପନ ଭାଇଙ୍କର କ'ଣ ହେଲା। ମୁଁ କହିଲି ଏବେ ତ ମୁଁ ତଳକୁ ଯାଇ ଆସିଲି (ମୁଁଏଥେନା ବୁକ୍‌ସର କାର୍ଯ୍ୟାଳୟ ଯେଉଁ ଘରେ ପ୍ରଥମ ମହଲରେ କରିଛି ସେ ତଳମହଲାରେ ସପରିବାର ରହି ଆସୁଛନ୍ତି।) ସେମିତି କିଛି ଲାଗିଲା ନାହିଁ । ପୁଣି ସେ ମୋତେ କହିଲେ ନାଇଁ ମତେ କେହି ଜଣେ ଫୋନ୍‌କରି କହିଲେ ତ ଆପଣ ଟିକେ କନ୍‌ଫର୍ମ କରିଜଣାନ୍ତୁ । ମୁଁ ସଙ୍ଗେସଙ୍ଗେ ତପନ ଭାଇଙ୍କ ପୁଅ ସନ୍ଦିପ୍‌କୁ ଫୋନ୍‌କଲି ସେ କହିଲା କାକା ୩.୪୫ ରେ ବାପାଚାଲିଗଲେ । ତା'ପରେମୁଁ ଦୁଇ ପଦ ତା' ସହ କଥା ହୋଇ ସୁଚେତା ମ୍ୟାଡ଼ମ୍‌ଙ୍କୁ ଜଣାଇବା ସହ ଅନ୍ୟ ମାନଙ୍କୁ ମଧ୍ୟ ଜଣାଇଲି ଓ ଫେସ୍‌ବୁକ୍‌ରେ ବାର୍ତ୍ତାଟିଏ ଦେଲି ।

ତପନ ଭାଇଙ୍କସହ ମୋର ବହୁ ପୁରୁଣା ପରିଚୟ । ଝଂକାର ଇତ୍ୟାଦି ବହୁ ଭଲ ପତ୍ରପତ୍ରିକାରେ ତାଙ୍କର କବିତାସବୁ ପଢୁଥିଲି । ପ୍ରାୟ ୨୦ ବର୍ଷତଳୁ ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡ ସାହିତ୍ୟ ଖଟିରେ ମୁଁ ଯୋଗଦେବା ବେଳେ ତାଙ୍କୁ ବେଳେବେଳେ ଦେଖେ ଓ କଥାହୁଏ। ବହୁ ସ୍ନେହସିକ୍ତ ତାଙ୍କ ଆଚରଣ, ବ୍ୟବହାର। ସେ ସେତେବେଳେ ପୁରୀରୁ ଆସୁଥାନ୍ତି। ପରେ ଆସି ଭୁବନେଶ୍ୱରରେ ରହିଲେ । ସେତେବେଳକୁ ସେ କ୍ୟାନ୍‌ସର୍ ବିମାରରେ ଆକ୍ରାନ୍ତ ହୋଇସାରିଥିଲେ । କିନ୍ତୁ ଭଗବାନଙ୍କ ଦୟାରୁ କେମୋ ଇତ୍ୟାଦି ଚିକିତ୍ସାରେ ସେ ଆରୋଗ୍ୟ ଥିଲେ । ପରେ ତାଙ୍କୁ କିଡ୍‌ନୀ ରୋଗର ପୀଡ଼ାରହିଲା । ସପ୍ତାହକ ଦୁଇଥର ସେ ଡାଇଲେସିସ୍ ସହ ଅନ୍ୟାନ୍ୟ ଚିକିତ୍ସା ହେଉଥିଲେ । ଏତେ ନିକଟରେ ଥାଇ ବି ମୁଁ ତାଙ୍କ ସହ ବିଶେଷ ସମୟ ବିତେଇ ପାରିନାହିଁ । ସ୍ୱାସ୍ଥ୍ୟର ଏପରି ଅବସ୍ଥାରେ ବି ସେ ଅଶୀ ଦଶକର ବାତା' ପୂର୍ବର ଓଡ଼ିଆ ସିନେମା ଇତ୍ୟାଦି ସଙ୍ଗୀତ ସବୁବେଳେ ଶୁଣୁଥାନ୍ତି। ଏବଂ ବହି ଓ ପତ୍ରପତ୍ରିକା ରୀତିମନ୍ତ ପଢୁଥାନ୍ତି । ମୁଁ ଭୁବନେଶ୍ୱର ଆସିବା ପରେ ମୋ ଚିହ୍ନାଜଣା ସମସ୍ତେ ମୋତେ ରାଜୁଭାଇ, ରାଜୁବାବୁ ଏମିତିସବୁଡାକନ୍ତି । କିନ୍ତୁ ତପନ ଭାଇସବୁବେଳେ ମୋତେ ରାଜ୍‌କହନ୍ତି ଏଣୁ ତ ଖୁସିଲାଗେ ।

ଓଡ଼ିଆ ସାହିତ୍ୟ ସଂଗୀତ ଓ ପ୍ରକାଶନ ଧାରା ତାଙ୍କୁ ହରେଇବାର ଦୁଃଖ ସହଜେ ତ ଯିବନି । ତାଙ୍କ ଅମର ଆତ୍ମାର ସଦ୍‌ଗତିହେଉଏତିକିହିଁକାମନା ।



# ଶ୍ରଦ୍ଧାଞ୍ଜଳି

ରୀତାରାଣୀ ମହାପାତ୍ର

କବି ତପନ ପଟ୍ଟନାୟକଙ୍କ ବିଶାଳ ସାହିତ୍ୟକୃତି ତାଙ୍କୁ ଚିର ସ୍ମରଣୀୟ କରି ରଖିବ ନିଶ୍ଚୟ । ସେ ଅତ୍ୟନ୍ତ ଅମାୟିକ, ସରଳ, ଶ୍ରଦ୍ଧାଶୀଳ, ସ୍ନେହୀ ଓ ସ୍ୱାଭିମାନୀ ମଣିଷ ଥିଲେ । ମୋର ସୌଭାଗ୍ୟ ଯେ ମୁଁ ବ୍ୟକ୍ତିଗତ ଭାବେ ତାଙ୍କ ସହିତ ମିଶିବାର ସୁଯୋଗ ପାଇଥିଲି ଏବଂ ଅନେକ ପ୍ରେରଣା ମଧ୍ୟ ପାଇଥିଲି । ମୋର ଦୁଇଟି କବିତା ସଂକଳନ ମଧ୍ୟ ସେ 'ସମନ୍ୱୟ' ଦ୍ୱାରା ପ୍ରକାଶିତ କରିଥିଲେ । କିଛି ମାସ ତଳେ ତାଙ୍କର ଚିକିତ୍ସାଜନିତ କଟକଣା ଭିତରେ ତାଙ୍କୁ ଦେଖିଥିଲି ପୁତ୍ର ସମ୍ବିତ ସହିତ । ଅନେକ ଥର ସେ ଜଟିଳ ସ୍ୱାସ୍ଥ୍ୟଜନିତ ବିପଦର ମୁକାବିଲା କରି ସୁସ୍ଥ ହୋଇ ବାହାରି ଆସିଥିଲେ । ବହୁତ କାମ ବାକିଥିବାର ସୂଚନା ଦେଉଥିଲେ । ତେଣୁ ତାଙ୍କର ବିଦାୟ ଆସନ୍ନ ବୋଲି ଭାବି ହେଉ ନ ଥିଲା । ତାଙ୍କର ବିୟୋଗ ସାହିତ୍ୟ ପରିବାରର ଅପୂରଣୀୟ କ୍ଷତି ନିଶ୍ଚୟ । ସେହି ଅମର ଆତ୍ମାର ସଦ୍‌ଗତି ହେଉ । ଭଗବାନ ତାଙ୍କ ପରିବାରବର୍ଗଙ୍କୁ ଏ ଦୁଃଖ ସହ୍ୟ କରିବାର ଶକ୍ତି ଓ ଧୈର୍ଯ୍ୟ ଦିଅନ୍ତୁ । ମୋର ହୃଦୟରୁ ତାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଓ ପ୍ରଣାମ ଜଣାଉଛି ।












# ବନ୍ଦନୀୟ ତପନ ଭାଇ

## ଲଲାଟେନ୍ଦୁ ମିଶ୍ର

"ମୁଁ ଆସିଛି ଦେଖି ମୋ' କଳା ବଦନକୁ' - ଆକାଶବାଣୀର ପ୍ରାତଃ ଭଜନ କାର୍ଯ୍ୟକ୍ରମରେ ବହୁଳ ଭାବେ ପ୍ରସାରିତ ଓ ସର୍ବଜନାଦୃତ। ନବେ ଦଶକର ଏହି ଭଜନ ମୋ' ଛାତ୍ର ଜୀବନରେ ବିରାଟ ପ୍ରଭାବ ପକେଇଥିଲା। ଯେତେବେଳେ ଏହି କାଳଜୟୀ ଭଜନର ରଚୟିତା ତପନ ପଟ୍ଟନାୟକଙ୍କୁ ଚାକିରି ଜୀବନରେ ପ୍ରଥମେ ସାକ୍ଷାତ ପାଇଥିଲି, ମୁଁ ଖୁସିରେ ଆତ୍ମ ବିଭୋର ହୋଇଯାଇଥିଲି। ସେହି ଦିନଠାରୁ ତାଙ୍କ ସହିତ ବ୍ୟକ୍ତିଗତ ଓ ଆତ୍ମିକ ସଂପର୍କ ଗଢ଼ି ଉଠିଥିଲା। ସେ ଥିଲେ ଜଣେ ଉଚ୍ଚକୋଟୀର କବି, ସାହିତ୍ୟିକ ତଥା ଜଣେ ଅତି ଦରଦୀ, ସମ୍ବେଦନଶୀଳ ଓ ସ୍ୱାଭିମାନୀ ମଣିଷ। ତାଙ୍କ ଅବର୍ତ୍ତମାନ ଓଡ଼ିଆ ସାହିତ୍ୟାକାଶରେ ଏକ ଶୂନ୍ୟସ୍ଥାନ ହେଇ ରହିବ, କିନ୍ତୁ ତାଙ୍କର ଅନବଦ୍ୟ ସୃଷ୍ଟି ପାଇଁ ସେ ଚିରସ୍ମରଣୀୟ, ବନ୍ଦନୀୟ ହେଇ ରହିବେ।

*ଅବସରପ୍ରାପ୍ତ ଓ.ଏ.ଏସ୍.*









# ଏ ସୂର୍ଯ୍ୟାସ୍ତ ସାଧାରଣ ନୁହେଁ

ସୁଚେତା ମିଶ୍ର

ଆପଣ ଚାଲିଯାଆନ୍ତି
ଗଛ କରୋଡରେ ରଖିଦେଇ
ଗୋଟେ ପୁରାତନ ବହି
ସଂସାର ଅଣ୍ଡାଳି ହେଉଥାଏ.... ପାଏନି
ଏକାନ୍ତ ଜଙ୍ଗଲ ଭିତରେ ଘୂରିବୁଲୁଥିବା ଅନ୍ଧାର କହେ
ଏ ସୂର୍ଯ୍ୟାସ୍ତ ସାଧାରଣ ନୁହେଁ।

କେବଳ ଉଜ୍ଜ୍ୱଳତାରେ ଝଲସିବା ନୁହଁ
ମୁଁ ଦେଖିଛି ଆପଣଙ୍କୁ ଏକାଏକା ମାଟି ଖୋଳି
ନଈଟିଏ ଭିଡି ଆଣିବାର ପୀଡାକୁ
ଯେତିକି ଝାଳ ସରସର ସେତିକି ଲୁହ କଣ୍ଠରେ
ଦେଖିଛି ରକ୍ତ ଛଳଛଳ ଆପଣଙ୍କ ଆଙ୍ଗୁଠିକୁ
ଆଉ ଦୂରରେ କେଉଁଠି ପାରଦର ଧାରଟିଏ ଭଳି ଧକଉଥିବା ନଈକୁ
ପ୍ରାର୍ଥନାର ଅସ୍ତିତ୍ୱକୁ ଚୁରମାର୍ କରି ଜମାଟ ବାନ୍ଧିଥିବା କୋହ
ଆଜି କହେ ଏ ସୂର୍ଯ୍ୟାସ୍ତ ସାଧାରଣ ନୁହେଁ।

ଅବ୍ୟକ୍ତ ଅପମାନ ଆଉ ଯନ୍ତ୍ରଣାକୁ ପିଇ
ସତରେ କଣ କିଏ ସ୍ପନ୍ଦନ ପାଲଟିପାରେ
ସାଧନ ହେଇଯାଏ
ତପନ ଭଳିଜଳେ ( ? )

କବିତା ପାଲଟି ପାରୁ ନ ଥିବା କିଛି ହାହାକାର ଆଜି କହେ
ଏ ସୂର୍ଯ୍ୟାସ୍ତ ସାଧାରଣ ନୁହେଁ। 

ଦୂରଭାଷ:୯୯୩୭୧୫୯୮୯୬





# ଦରଦୀ ବନ୍ଧୁ ତପନ

**ରଘୁନାଥ ସାହୁ**

ପିଲାଦିନରୁ ବନ୍ଧୁତା - ବାଲୁଗାଁ ହାଇସ୍କୁଲରେ, ସେ ମୋ' ତଳ ଶ୍ରେଣୀରେ ପଢୁଥିଲେ। ମୋର ସୌଭାଗ୍ୟ, ଆମ ବନ୍ଧୁତା ଆଜି ଯାଏ ଅତୁଟ ରହିଥିଲା। ତପନ ସହିତ ମୋର ପାରିବାରିକ ସଂପର୍କ ଥିଲା। ତାଙ୍କର ପିତା ପଦ୍ମଚରଣ ପଟ୍ଟନାୟକ ଆମ ଅଞ୍ଚଳର ଜଣେ ଖୁବ୍ ଜଣାଶୁଣା ବ୍ୟକ୍ତିତ୍ୱ ଥିଲେ। ସେ ଥିଲେ ଲେଖକ। ସେଇଥିପାଇଁ ତ, ତପନ ପିଲାଦିନରୁ ଲେଖିବା ଆରମ୍ଭ କରିଥିଲେ। ଖୁବ୍ ଅଳ୍ପ ବୟସରେ କବି ହିସାବରେ ପ୍ରତିଷ୍ଠାଲାଭ କରିବା, ତାଙ୍କ ପକ୍ଷରେ ହିଁ ସମ୍ଭବ ହୋଇଥିଲା।

ଛନ୍ଦ କପଟହୀନ ମନ, ପ୍ରକୃତିକୁ ଭଲପାଉଥିବା ହୃଦୟ, ସୌନ୍ଦର୍ଯ୍ୟପିପାସୁ ଆଖି, ଧୀର ଚଞ୍ଚଳ କଥା - ଏସବୁ ଥିଲା ତାଙ୍କର ପରିଚୟ। ସେ ଭଲପାଉଥିଲେ ମଣିଷକୁ। ସେ ବୁଝୁଥିଲେ ମଣିଷର ଦୁଃଖ ଓ ଦରଦ। କାହାରି ଆଖିରେ ଲୁହ ଦେଖିଲେ, ସେ କାନ୍ଦୁଥିଲେ। କ୍ରୋଧ ଓ ଈର୍ଷାଠୁ ବହୁ ଦୂରରେ ଥିଲା ତାଙ୍କର ବାସ। ପ୍ରକୃତି ରାଣୀ ଚିଲିକା, ସୋଲରୀ ପାହାଡ଼, ଶାଳିଆ ନଈ - ତାଙ୍କୁ ଦେଇଥିଲା ଲେଖିବାର ଖୋରାକ। ଜଣେ କବି, ଗୀତି କବି କେବଳ ନୁହେଁ, ଔପନ୍ୟାସିକ ହିସାବରେ ମଧ୍ୟ ତାଙ୍କର ସିଦ୍ଧି ଅବିଶ୍ୱସନୀୟ।

ସ୍ମୃତି ତ ଅନେକ ଅଛି ମୋର ଦରଦୀ ବନ୍ଧୁ ତପନଙ୍କ ସହିତ। ଏବେ ସେଇ ସ୍ମୃତିରେ ହିଁ କେବଳ ଜୀଇବାକୁ ପଡ଼ିବ, ଏ କଥା ଭାବିଲାବେଳକୁ କଷ୍ଟ ହେଉଛି। ମୁଁ ଏମ୍.ଏଲ୍.ଏ. ଥିଲାବେଳେ ଆମର ଅନେକ ଥର ସାକ୍ଷାତ୍ ହୋଇଛି। କିନ୍ତୁ କେବେ କୌଣସି କାମ ପାଇଁ ଅନୁରୋଧ କରି ନାହାନ୍ତି। ସେ ଦୁଃଖରେ ଥିଲେ ବି, ସ୍ୱାଭିମାନବଶତଃ, କାହାରି ଆଗରେ କିଛି କହନ୍ତି ନାହିଁ।

ଅସ୍ଥାୟୀ ଜୀବନ - ଚିରନ୍ତନ କେବଳ ଯଶ ଓ ଖ୍ୟାତି। ସେ ଆଜି ଆମ ଗହଣରେ ନାହାନ୍ତି ସତ, କିନ୍ତୁ ତାଙ୍କର ଅମର କୀର୍ତ୍ତି ଆଜି ବି ତାଙ୍କରି କଥା କହୁଛି। କେବଳ ଆଜି ନୁହେଁ, ଆଗାମୀର ଅନେକ ବର୍ଷ ପାଇଁ କହିବ, ଏଥିରେ ସନ୍ଦେହ ନାହିଁ। ସେ ଆମରି ଭିତରେ ବଞ୍ଚି ରହିବେ। ଆମରି ସ୍ମୃତିରେ ଜୀଇ ରହିଥିବେ।

ତାଙ୍କର ଅମର ଗୀତ - 'ମୁଁ ଆସିଛି ଦେଖି ମୋ କଳାବଦନକୁ' ମୁଁ ଅନେକ ଥର ଶୁଣିଛି। ସେଇ ଜଗନ୍ନାଥଙ୍କ ନିକଟରେ ମୋର ବିନମ୍ର ପ୍ରାର୍ଥନା - ତପନ, ଯୋଉଠି ବି ଥାଆନ୍ତୁ, ଭଲରେ ଥାଆନ୍ତୁ।'

**ପୂର୍ବତନ ବିଧାୟକ,** *ଚିଲିକା*



# ତପନ ଭାଇଙ୍କ ସ୍ମୃତିରୁ ଖିଏ

**ବିଭୂତି ଭୂଷଣ ସାମନ୍ତରାୟ**

ଧରାପୃଷ୍ଠ ଏକ ଅଭିନୟ ମଞ୍ଚ ସଦୃଶ। ସମଗ୍ର ମନୁଷ୍ୟ ଅବତୀର୍ଣ୍ଣ ହୋଇଥାନ୍ତି କଳାକାର ସାଜି ଅଭିନୟ ରଙ୍ଗ ମଞ୍ଚରେ। ନିଜ ନିଜ କଳାର ଉତ୍କର୍ଷ ପ୍ରତିପାଦିତ କରି ବାହୁଡ଼ି ଯାଆନ୍ତି ଅଭିନୟ ରଙ୍ଗ ମଞ୍ଚରୁ। ସେହିଭଳି ଜଣେ ନିଖୁଣ କଳାକାର ଶ୍ରେଷ୍ଠତାର ଶିଖରରେ ପହଞ୍ଚି ସମସ୍ତଙ୍କ ଆଖିରେ ଲୋତକ ଭରି ଦେଇ ବିଦାୟ ନେଇଛନ୍ତି ତପନ ଭାଇ।

କବି, ଲେଖକ, ନାଟ୍ୟକାର, ନିର୍ଦ୍ଦେଶକ ତଥା ସଙ୍ଗୀତଜ୍ଞ ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକଙ୍କର ଜ୍ୟେଷ୍ଠପୁତ୍ର ତପନ କୁମାର ପଟ୍ଟନାୟକ। ଛବିବାଳା, ସପନ କୁମାର, ଗିରିବାଳା, ବିଜନ କୃପା ପଟ୍ଟନାୟକ ପରିବାରର ସମଗ୍ର ବାଲୁଗାଁ ବାଣପୁର ଅଞ୍ଚଳ ସରବରାକାର (ଜମିଦାର) ଭାବରେ ଖ୍ୟାତି ଥିଲା। ମୋ ପରିବାର ସହିତ ତପନ ଭାଇଙ୍କ ପରିବାରର ଘନିଷ୍ଠତା ଅତିମାତ୍ରାରେ ଥିଲା। ମୋ ବାପା ଏବଂ ତପନ ଭାଇଙ୍କ ବାପାଙ୍କ ମଧ୍ୟରେ ନିବିଡ଼ତା ଥିଲା। ଆମ୍ଭ ପିତାଙ୍କ ଦେହାନ୍ତ ବେଳକୁ ଆମେ ଭାଇ ଭଉଣୀ ଛୋଟ ଥିଲୁ। ସେହି ସମୟରୁ ତପନ ଭାଇ ଆମକୁ ଅତି ସ୍ନେହ କରୁଥିଲେ ଏବଂ ପ୍ରତ୍ୟେକ କ୍ଷେତ୍ରରେ ଭଲମନ୍ଦ ପଚାରି ବୁଝୁଥିଲେ।

ତପନ ଭାଇ ବାଲୁଗାଁରେ ଜନ୍ମଗ୍ରହଣ କରି ସ୍କୁଲ ଶିକ୍ଷା ବାଲୁଗାଁ ଉଚ୍ଚବିଦ୍ୟାଳୟରେ ସମାପ୍ତ କରି ଓଡ଼ିଶା ରାଜ୍ୟ ବିଦ୍ୟୁତ ବୋର୍ଡ଼ରେ ଚାକିରି ପାଇ ବାଲୁଗାଁ ଅଫିସ୍‌ରେ ଯୋଗ ଦେଲେ। ସେ ଜଣେ ସରଳ, ନିଷ୍କପଟ, ସଚ୍ଚୋଟ, ନିଷ୍ପାପର, ପରୋପକାରୀ ଅମାୟିକ ବ୍ୟକ୍ତିତ୍ୱ ଥିଲେ। ଛୋଟ ପିଲାଙ୍କଠାରୁ ବୟସ୍କମାନଙ୍କ ସହିତ ଉତ୍ତମ ସଂପର୍କ ସ୍ଥାପନ କରି ସମସ୍ତଙ୍କର ପ୍ରିୟପାତ୍ର ହୋଇପାରିଥିଲେ।

ତପନ ଭାଇଙ୍କ ପ୍ରଚେଷ୍ଟାରେ ବାଲୁଗାଁର ସମସ୍ତ ଯୁବକମାନଙ୍କୁ ନେଇ "ନେତାଜୀ ପାଠାଗାର" ନିର୍ମାଣ ହୋଇଥିଲା। ପାଠାଗାରକୁ ତାଙ୍କର ଏବଂ ଅନ୍ୟ ଲେଖକମାନଙ୍କର ବହୁ ଅମୂଲ୍ୟ ପୁସ୍ତକ ପ୍ରଦାନ କରିଥିଲେ। ଗ୍ରାମର ସାମାଜିକ ଓ ସମୂହ କାର୍ଯ୍ୟ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ। ପିଲାଟି ଦିନରୁ







ଲେଖାଲେଖି କରିବାରେ ତାଙ୍କର ରୁଚି ଥିଲା । ବାପାଙ୍କ ପ୍ରେରଣା ପାଇ ଅନେକ କବିତା, ଗଳ୍ପ, ଉପନ୍ୟାସ ରଚନା କରିଛନ୍ତି । ଲେଖାଗୁଡ଼ିକ ଉନ୍ନତ ମାନର ହୋଇ ଉଚ୍ଚ ପ୍ରଶଂସିତ ହୋଇଛି ।

ତପନ ଭାଇ ଗାଁ ପରିବେଶରେ ଅତି ସାଧାରଣ ଜୀବନଯାପନ କରୁଥିଲେ । ଗାଁ ମାଟିକୁ ଅତିମାତ୍ରାରେ ସ୍ନେହ କରୁଥିଲେ । ଗାଁ ଲୋକଙ୍କ ସୁଖଦୁଃଖରେ ଭାଗୀଦାର ହେଉଥିଲେ । ପ୍ରତ୍ୟେକ ଲୋକଙ୍କୁ ସାହାଯ୍ୟ କରୁଥିଲେ । ବିଶେଷକରି ଗରିବ ଲୋକଙ୍କୁ । କାହାର ଇଲେକ୍ଟ୍ରିକ୍ ଲାଇନ୍ କଟିଗଲେ, ନୂଆ ସଂଯୋଗକରଣରେ ହାତରୁ ପଇସା ଦେଇ କାମ କରି ଦେଉଥିଲେ । ଏପରିକି ଗ୍ରାମର କେତେ ଲୋକଙ୍କର ବିଲ୍ ନିଜେ ଭରଣା କରିଦିଅନ୍ତି । ଏଠାରେ କାହାକୁ କେଉଁ ପ୍ରକାର ସାହାଯ୍ୟ ଦରକାର ଅଣ୍ଟାଭିଡ଼ି ପ୍ରସ୍ତୁତ ହୋଇଯାଆନ୍ତି, ସହଯୋଗର ହାତ ବଢ଼ାଇ । ବାଲୁଗାଁ ଗାନ୍ଧୀଛକରେ "ଭୀମପଣ୍ଡା"ଜଳଖିଆ ଦୋକାନ ତାଙ୍କର ଅତି ପ୍ରିୟ ! ସକାଳେ ଏବଂ ସନ୍ଧ୍ୟାରେ ଦୁଇଓଳି ଜଳଖିଆ ନିଶ୍ଚିତ ସେହି ହୋଟେଲରେ ଖିଆହେବ । ସେହି ରାସ୍ତା ଦେଇ ଯିଏ ବି ଚିହ୍ନା ପରିଚୟ ଯାତାୟତ କରୁଥିବେ ସମସ୍ତଙ୍କୁ ଡାକି ଆଣି ଜଳଖିଆ ଖାଇବାକୁ ବାଧ୍ୟ କରିବେ ।

ମୋର ଗୋଟେ କଥା ମନେ ପଡୁଛି – ବାଲୁଗାଁ ଉଚ୍ଚ ବିଦ୍ୟାଳୟର ପତ୍ରିକାରେ ଲେଖା ପାଇଁ ଥରେ ସାର୍ କହିଲେ । ମୋତେ କିଛି ଲେଖା ଆସେନି, ମୁଁ ତପନ ଭାଇଙ୍କୁ କହି ଲେଖାଟେ ନେଇ ତାଙ୍କୁ ଦେଲି । ସେ ଲେଖା ପଢ଼ି ହସିଲେ ଓ କହିଲେ ସତ କହ ଲେଖା କାହାଠୁ ଆଣିଛୁ । ସତ କହିଦେଲି ଯେ ତପନ ଭାଇଙ୍କ ଲେଖା । ସେହି ଲେଖାଟି ମ୍ୟାଗାଜିନ୍‌ରେ ପ୍ରକାଶ ପାଇଲା ଏବଂ ଆଦୃତ ହେଲା । ଗ୍ରାମର ମନ୍ଦିର ପ୍ରାଙ୍ଗଣରେ ଯୁବକ ମଧ୍ୟବୟସ୍କମାନେ ଭଲିବଲ୍ ଖେଳନ୍ତି, ପ୍ରତ୍ୟେକ ଦିନ ଉପରବେଳା ଖେଳ ଆରମ୍ଭ ହୁଏ । ତପନ ଭାଇ ବି ଖେଳିବାକୁ ଆସନ୍ତି । ଜିଦିବାଦରେ ଖେଳ ହୁଏ । ସେମାନେ ଆମ୍ଭମାନଙ୍କୁ ଖେଳ ଭୁଲ୍ ଠିକ୍ ବତାଇ ଦେଇଥାନ୍ତି । ପ୍ରତ୍ୟେକ କ୍ଷେତ୍ରରେ ଯୁବପିଢ଼ିମାନଙ୍କୁ ଉତ୍ସାହିତ କରିଥାନ୍ତି । ସେ ଜଣେ ଆଦର୍ଶ ବ୍ୟକ୍ତିତ୍ୱ ଥିଲେ । ତାଙ୍କର ପ୍ରେରଣା ଅନେକଙ୍କୁ ଉଚ୍ଚ ସ୍ଥାନରେ ଅଧିଷ୍ଠିତ କରିପାରିଛି ।

ଚାକିରିର ଦୁଇ ତୃତୀୟାଂଶ ଅତିବାହିତ ହୋଇସାରିବା ପରେ ତାଙ୍କ ଚାକିରି ଜୀବନରେ ଏକ ବିପର୍ଯ୍ୟୟର କଳା ବାଦଲ ଘୋଟି ଆସିଲା । କଥାରେ ଅଛି 'ସ୍ୱ



ଜାତି ପରମ ହିଂସୁକ" । ବାଲୁଗାଁରେ ଇଲେକ୍ଟ୍ରି ଏସ୍.ଡ଼ି.ଓ. ଭାବେ ଜଣେ ପଟ୍ଟନାୟକ ଯୋଗ ଦେଲେ । ସେ ମହାଶୟ ତପନ ଭାଇଙ୍କ କାର୍ଯ୍ୟକଳାପ ଓ ଶତମୁଖ ପ୍ରଶଂସାରେ ଅସହିଷ୍ଣୁ ହୋଇ ମିଥ୍ୟା ଆରୋପ ଲଗାଇ ଚାକିରିରୁ ଅନ୍ତର କରିଦେଲେ । ପରେ କୋର୍ଟ କଚେରୀର ଆଶ୍ରୟ ନେଇ ପୁନଃ ଅବସ୍ଥାପିତ ହେଲେ ପୁରୀ ସହରରେ । ହେଲେ ମାନସିକ, ଆର୍ଥିକ ଆଘାତପ୍ରାପ୍ତ ହୋଇଥିଲେ । ତଥାପି ସେ ଭାଙ୍ଗି ପଡ଼ିନଥିଲେ । ଚାକିରିରୁ ଅବସର ନେବା ପରେ ଦୁରାରୋଗ୍ୟ ରୋଗରେ ଆକ୍ରାନ୍ତ ହେଲେ । ଚିକିତ୍ସାପାଇଁ ଭୁବନେଶ୍ୱର ଯିବାକୁ ପଡୁଥାଏ । ତେଣୁ ଭୁବନେଶ୍ୱରରେ ଘରଭଡ଼ା ନେଇ ଚିକିତ୍ସିତ ହେଉଥିଲେ । ଆରୋଗ୍ୟ ଲାଭ କଲା ପରେ ତାଙ୍କର ଏକମାତ୍ର ପୁଅ "ଚାନ୍ଦୁ"ର ବାହାଘର ଗ୍ରାମରେ ଆୟୋଜନ କରିବାକୁ ମନସ୍ଥ କରିଥିଲେ, କିନ୍ତୁ ବିଧିର ବିଧାନ ବିଚିତ୍ର, ତାଙ୍କ ଆଶା ଆଶରେ ହିଁ ରହିଗଲା । କାରଣ ତପନଭାଇ କିଡ୍‌ନି ରୋଗରେ ଆକ୍ରାନ୍ତ ହୋଇ ସପ୍ତାହକୁ ଦୁଇଥର ତାଙ୍କୁ ଡାଏଲିସିସ୍ କରିବାକୁ ପଡ଼ିଲା । ଫଳରେ ଆର୍ଥିକ, ମାନସିକ ଏବଂ ଶାରୀରିକ ଦୁର୍ବଳ ହୋଇପଡ଼ିଲେ । ଦୀର୍ଘ ଆଠ ବର୍ଷ ପର୍ଯ୍ୟନ୍ତ ମୃତ୍ୟୁ ସହ ସଂଗ୍ରାମ କରି ଜୀବନ ଯୁଦ୍ଧରେ ହାରିଗଲେ ।

ତପନ ଭାଇଙ୍କ ଶ୍ରେଷ୍ଠ ଭଜନ ଥିଲା "ଆସିଛି ଦେଖି ତୋ କଳା ବଦନକୁ" । ସ୍ୱର ଦେଇଥିଲେ ନବ କୁମାର ମିଶ୍ର । ଏହା ସର୍ବଜନ ପ୍ରଶଂସିତ ହୋଇଥିଲା ।

ଗାଁର ମାଟି, ପାଣି, ପବନ, ପରିବେଶ ତାଙ୍କୁ ଏତେ ମାତ୍ରାରେ ବଶୀଭୂତ କରିଥିଲା ଯେ ଶେଷ ସମୟରେ ପରିବାରବର୍ଗଙ୍କୁ କହିଥିଲେ ମୋ' ଗାଁ ଶ୍ମଶାନକୁ ନେଇ ମୋତେ ସଂସ୍କାର କରିବ । ସୁଦୂର ଭୁବନେଶ୍ୱର ମେଡ଼ିକାଲ୍‌ରୁ ଆସି ଗ୍ରାମ ଶ୍ମଶାନରେ ସଂସ୍କାର କାର୍ଯ୍ୟ କରାଗଲା । ଏହି ଦୁଃଖଦ ଘଟଣା ଲେଖିବାକୁ ଧୈର୍ଯ୍ୟ ପାଉ ନାହିଁ । ହୃଦୟର କୋହ ଓ ଲୋତକର ଅଶ୍ରୁରେ ତପନଭାଇଙ୍କୁ ଅନ୍ତରର ଶ୍ରଦ୍ଧାଞ୍ଜଳି ଜଣାଉଛି । ଆଜି ବି ମୋର ବିଶ୍ୱାସ ହେଉ ନାହିଁ କି ତପନ ଭାଇ ଆଉ ନାହାନ୍ତି ବୋଲି ।

ମୁଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ ପ୍ରାର୍ଥନା କରୁଛି ତପନ ଭାଇ ଯେଉଁଠି ଥାଆନ୍ତୁ ସେ ତାଙ୍କୁ ପାଦ ତଳେ ଆଶ୍ରୟ ଦେବେ । ସେ ତାଙ୍କର ଅମର ଅତ୍ମାର ସଦ୍‌ଗତି ହେଉ । ଏତେ ବଡ଼ ଦୁଃଖ ସହ୍ୟ କରିବା ପାଇଁ ଭଗବାନ ତାଙ୍କ ପରିବାରକୁ ଧୈର୍ଯ୍ୟ, ଶକ୍ତି ଏବଂ ସାହସ ପ୍ରଦାନ କରନ୍ତୁ । ଏତିକି ପ୍ରାର୍ଥନା ।

ବାଲୁଗାଁ





# ସେ ସୃଜନଶୀଳ ନିରନ୍ତର

ଜେନାମଣି ସଂଜୀବ କୁମାର

'ସାଗର ରହିଲା ଦୂରେ ସହରର ଆରପାରେ
ଦୂର ଗାଁ ଗିରି ନଈ
କେମିତି ବୁଝିବ ତାରେ'

ଏଇ ଗୀତର ଗୀତିକାର ତପନ ପଟ୍ଟନାୟକ ଥରେ ସୌଭାଗ୍ୟକୁ ମୋ ଘରକୁ ମୋର ପ୍ରିୟ ଗୀତିକାର ଓ ସାହିତ୍ୟିକ ଡ. ଅଜୟ ସ୍ୱାଇଁଙ୍କ ସହିତ ଆସିଥିଲେ । ମୁଁ ତାଙ୍କୁ କେବେ ଦେଖି ନଥିଲି । ତାଙ୍କ ନାମ ଜାଣିଲା ପରେ ମୁଁ ସଙ୍ଗେ ସଙ୍ଗେ ତାଙ୍କ ଗୀତିକଥାରେ ଥିବା ଉପରୋକ୍ତ ଗୀତଟିକୁ ଗାଇ ଶୁଣାଇଲି । ସେ ବହୁତ ଖୁସିହୋଇ କହିଲେ : ମୋ ଅଜାଣତରେ ମୋର ଜଣେ ପ୍ରିୟ ବନ୍ଧୁଙ୍କୁ ପାଇ ମୁଁ ଆଜି ବହୁତ ଖୁସି । ତା'ପରେ ବହୁତ ବର୍ଷର ବ୍ୟବଧାନ ପରେ ଥରେ 'କେଦାରନାଥ ଗବେଷଣା ପ୍ରତଷ୍ଠାନ'ରେ ସାକ୍ଷାତ ହୁଏ । ସେଠାରେ ତାଙ୍କୁ ବିଶେଷ ସମ୍ମାନରେ ସମ୍ମାନିତ କରାଯାଇଥିଲା । ସେଇ ପରିପ୍ରେକ୍ଷୀରେ ମୁଁ ଅତୀତକୁ ସାଉଁଟି ତାଙ୍କରି ପାଇଁ ସେଇ ଗୀତଟିକୁ ଗାଉଥିଲି । ସେ ଖୁସିରେ କୋଳେଇ ନେଇଥିଲେ ମତେ । ସେତେବେଳେ ମଧ୍ୟ ସେ ଅସୁସ୍ଥ ଥିଲେ, କିନ୍ତୁ ତାଙ୍କ ସୃଜନଶୀଳ ସାହିତ୍ୟ ଓ ଗୀତିକବିତା ସେହିପରି ଅକ୍ଷୁଣ୍ଣ ଥିଲା । ଆଜି ତାଙ୍କ ଅବର୍ତ୍ତମାନରେ ମୋର ଗଭୀର ଶ୍ରଦ୍ଧାସୁମନ ଅର୍ପଣ କରୁଛି ।







# ଚିଲିକାର ଗାୟକ-ପକ୍ଷୀ : କବି ତପନ ପଟ୍ଟନାୟକ

**ଡ. ସତ୍ୟ ଷଡ଼ଙ୍ଗୀ**

କାବ୍ୟନାୟିକା ଚିଲିକା ଉପକଣ୍ଠ ବାଲୁଗାଁଠାରେ ତାଙ୍କର ଜନ୍ମ। ପିତା ତାଙ୍କର ସ୍ୱନାମଧନ୍ୟ କଣ୍ଠଶିଳ୍ପୀ ତଥା ନାଟ୍ୟକାର ପଦ୍ମଚରଣ ପଟ୍ଟନାୟକ। ପିତାଙ୍କ ସହପାଠୀ ବନ୍ଧୁ ପାଇକ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ। ତେଣୁ ଶୈଶବରୁ ସାହିତ୍ୟର ଶ୍ରୀଅକ୍ଷର ଶିଖିଥିଲେ ସେ ଆପଣା ଘରୁ। ତେବେ ତାଙ୍କର ହେତୁ ହେଲାବେଳକୁ ବାଲୁଗାଁରେ ଗୋଟିଏ ସାହିତ୍ୟିକ ଆନ୍ଦୋଳନ ସକ୍ରିୟ ଥିଲା। ସେତେବେଳର ପ୍ରତିଭାବାନ୍ ଯୁବ ସାହିତ୍ୟିକ, ଯଥା - ପ୍ରସନ୍ନ କୁମାର ପାଟଶାଣୀ, ଦେବେନ୍ଦ୍ର କୁମାର ମାନସିଂହ, ହୁସେନ୍ ରବିଗାନ୍ଧୀ, ନବୀନ ସୁବୁଦ୍ଧି, ପଞ୍ଚାନନ ଦାଶ ପ୍ରଭୃତି ଥିଲେ ଏହି ଗୋଷ୍ଠୀର ସତୀର୍ଥ। ଏମାନଙ୍କ ସମବାୟରେ ଓଡ଼ିଶାର ସାହିତ୍ୟିକ ବାତାବରଣରେ ଉଷ୍ମତା ଖେଳାଇ ପ୍ରକାଶ ପାଉଥିଲା ଆଧୁନିକତାର ପ୍ରତିବାଦୀ କାବ୍ୟ ଇସ୍ତାହାର 'ବେଳା' ଓ 'ଆଭା' ପତ୍ରିକା। ଆହୁରି ମଧ୍ୟ ଅଗ୍ରଜ କବି ନୀଳାଦ୍ରି ଭୂଷଣ ହରିଚନ୍ଦନ ସାଧନା-ମଗ୍ନ ଥିଲେ ଠିକ୍ ଏତିକିବେଳେ। ଏପରି ଏକ ଅପ୍ରତିହତ କାବ୍ୟିକ ବାତାବରଣ ସହ ଆଉ ଗୋଟିଏ ଆନ୍ତରିକ ଉଚ୍ଛ୍ୱାସର ପ୍ରେରଣା ଥିଲା ତାଙ୍କ କଲମରୁ କବିତା ଝରିବାର ଅନ୍ୟତମ ଯୁକ୍ତିସିଦ୍ଧ କାରଣ।

"କାହାର ସେ ବିଲୋଳ ହସ, ଶାନ୍ତମୁହଁ ଟଣା ଟଣା ଆଖି / ମତେ ଦିନେ ମୁଗ୍ଧ କଲା ଚିତ୍ରପଟ ଛବିଟିଏ ଭଳି / କାହାର ସେ ସ୍ନିଗ୍ଧ ମୂର୍ତ୍ତି ମତେ ଏତେ କଲା ଅନୁନୟ / ସ୍ୱତଃସ୍ଫୂର୍ତ୍ତ ଝରିଗଲା କଲମରୁ କାହାପାଇଁ କାଳି।"

କବିଟିଏ ଜନ୍ମନେଲା ତପନ ପଟ୍ଟନାୟକ ନାଁରେ, ଯିଏ ନିଜସ୍ୱ ରୀତିରେ ସୃଷ୍ଟିକଲା ଗୋଟିଏ ସୁରଭିତ କାବ୍ୟ ଉପବନ। କାବ୍ୟତାରା, ସୀମା ଓ ସ୍ମାରକୀ, ସ୍ରୋତସ୍ୱତୀ, ମୁଠାଏ ତାରା, ବିନିମୟ, ଢେଉଢେଉ ଅନ୍ଧାର, ଶୂନ୍ୟ ଧାନକ୍ଷେତ, ଫେରିବାର ମୂର୍ଚ୍ଛନାରେ, ରତୁର ବାସ୍ନାରେ, ଆରଜନ୍ମ, ମଗ୍ନମୌନ, ଅନିନ୍ଦିତା ଓ ଅନ୍ୟାନ୍ୟ କବିତା, ଅରଣ୍ୟ ଗହନ ପଥ, ଦୁଃଖ ଗୋଟିଏ ଗାଁ'ର ନାଁ, ପ୍ରଦକ୍ଷିଣ ପ୍ରତିପ୍ରସ୍ତ, ଅପହଞ୍ଚ ପ୍ରଭୃତି ସେହି ସୁରମ୍ୟ ଉଦ୍ୟାନର ଗୋଟିଏ ଗୋଟିଏ ପୁଷ୍ପିତ ପାଦପ। କବିବନ୍ଧୁ ଗିରିଜାକୁମାର ବଳିୟାରସିଂହ, ତପନଙ୍କ ସୁଦୀର୍ଘ କାବ୍ୟସାଧନା ଓ ତାହାର ବର୍ଣ୍ଣାଢ଼୍ୟ କ୍ରମୋତ୍ତରଣ ତଥା ପାଠକୀୟ ମର୍ମସ୍ପର୍ଶିତା ସମ୍ପର୍କରେ କହନ୍ତି, "କବି ତପନ ପଟ୍ଟନାୟକ ଅନେକ ଦିନର କବି। ଦୀର୍ଘ ଚାରି ଦଶନ୍ଧି ଧରି ସେ ସର୍ଜନା ରତ। ସ୍ୱପ୍ନରୁ ବାସ୍ତବତା, ରଙ୍ଗରୁ ରକ୍ତ, ତରଙ୍ଗରୁ ତଟ ନିରଞ୍ଜନା ଯାଏଁ ତାଙ୍କ କରୁଣ କାବ୍ୟପୁରୁଷର କ୍ରମଉତ୍ତରିତ ତୀର୍ଥଯାତ୍ରା – ତାଙ୍କ ପ୍ରତି ତନ୍ମୟ ରଖି ଆସିଛି ତାଙ୍କର ମରମୀ ପାଠକ ପାଠିକାମାନଙ୍କୁ।"





କବି ତପନ ପଟ୍ଟନାୟକ ସମକାଳୀନ ଓଡ଼ିଆ କବିତାର ବିକାଶ କକ୍ଷେ ତପସ୍ୟାମଗ୍ନ। ନିକଟ ଅତୀତରେ ସମକାଳର ପ୍ରତିନିଧି ସ୍ଥାନୀୟ ସାହିତ୍ୟକାରଙ୍କ ନିର୍ବାଚିତ ସାହିତ୍ୟ କୃତିଗୁଡ଼ିକୁ ନେଇ 'ସମକାଳୀନ ଓଡ଼ିଆ ସାହିତ୍ୟ' ଶୀର୍ଷକରେ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ଗୋଟିଏ ସଂକଳନ ପ୍ରସ୍ତୁତ କରିଥିଲେ। ସେହି ଗ୍ରନ୍ଥରେ କବି ତପନଙ୍କର ସ୍ମୃତିରେ ସ୍ମୃତିରେ ଚିଲିକା, ଜହ୍ନରାତି ଏକା ଏକା, ଦୂରତ୍ୱ ଓ ଅତିକ୍ରମ – ଏହି ଚାରୋଟି କବିତା ସ୍ଥାନିତ ହୋଇଛି।

ଏ ଦୃଷ୍ଟିରୁ ଦେଖିଲେ କବି ତପନ ପଟ୍ଟନାୟକଙ୍କ କବିତାରେ ଯେଉଁ ନୂତନ ଆୟତନଟି ଯୁକ୍ତ ହୋଇଛି ତାହା ତାଙ୍କ ନିଜସ୍ୱ ଓ ପୂର୍ବବର୍ତ୍ତୀ ଚେତନଠାରୁ ପୃଥକ୍। ମୃତ୍ୟୁଚେତନା ଭଳି ବିଷାଦ ବନ୍ଧନରୁ ଓହରି କବି ଗୋଟିଏ ନୂଆ ସମ୍ଭବନା ଓ ଆଶାବାଦରେ ଉପନୀତ ହୋଇଛନ୍ତି। ତାଙ୍କ କବିତାରେ କ୍ରମଶଃ ଶୁଣାଯାଏ ସରସତାର ସ୍ୱର। ଏଥିପାଇଁ ଭାରତୀୟ ଜନ୍ମାନ୍ତରବାଦ କବିଙ୍କୁ ପ୍ରରୋଚିତ କରିଛି। ତେଣୁ ତାହା ତାଙ୍କ କବିତାର ବିଶେଷ ଉପଜୀବ୍ୟ ବସ୍ତୁ ହୋଇପଡ଼ିଛି। ପ୍ରେମ ଓ ଜନ୍ମାନ୍ତରବାଦର ସମନ୍ୱୟରେ ଗୋଟିଏ ଚମତ୍କାର କାବ୍ୟ ଆବେଗ ସୃଷ୍ଟି ହୋଇଛି ତାଙ୍କ କବିତାର ଅଙ୍ଗନରେ। କେତୋଟି ସ୍ୱାଦୁକର ଉଦାହରଣ ଏଠାରେ ଉଦ୍ଧୃତ କରାଯାଇପାରେ –

୧. କେତେ ଶହ ଜନ୍ମ ଆମ ଯା' ଭିତରେ ଯାଇଥିବ ବିତି / ପୂର୍ଣ୍ଣତା ନପାଇ ପୁଣି ବାରମ୍ବାର ଜନ୍ମୁଥିବା ଆମେ ଏଇମିତି / ପ୍ରତିଟି ଗଲା ଜନ୍ମକୁ ଭିତରେ ଭିତରେ ଆମେ ଦୋହରାଉଥିବା / ପ୍ରତ୍ୟୟ ଓ ପ୍ରତିଶ୍ରୁତି ପ୍ରତିଟି ଜନ୍ମର ଆମେ ମନେପକାଇବା।

୨.କେମିତି କେଜାଣି ସମୟ ସରିଲା / କେଉଁଠି ପଡ଼ିଲି ଶୋଇ /ଉଠିଲାବେଳକୁ ତୁମେ କେଉଁଆଡ଼େ / କେମିତି ଯାଇଚ ହଜି ବାରମ୍ବାର ମୁଁ ଜନ୍ମ ନେଉଚି / ତୁମକୁ ହିଁ ଖୋଜି ଖୋଜି। (ଜନ୍ମ)

୩. ଘଟରୁ ଘଟକୁ ଆତ୍ମା ଡେଇଁ ଡେଇଁ ଚାଲିଗଲା ପରି
ଜନ୍ମ ଜନ୍ମ କେତେ ଜନ୍ମ ସ୍ୱପ୍ନରେ ସ୍ୱପ୍ନରେ ଆମେ ଚାଲିବା ସଞ୍ଚରି।
(କେତେଜନ୍ମ)

୪. ଏଇ ଜନ୍ମର ନୀରବ ଗୀତ / ଆର ଜନ୍ମରେ ପଢ଼ିବା ଯାଇ /ସବୁକିଛି ଲିଭିଯିବ / ଆମପରି କେତେ ମୁଗ୍ଧ ମଣିଷଙ୍କୁ / ଦଗ୍ଧ କରି କରି ସେ ଦୁଇ ଅକ୍ଷର / ବଞ୍ଚିଥିବ ସମୟକୁ ଛୁଇଁ। (ପ୍ରେମ)

ତେବେ ସାଧାରଣ ମଣିଷଙ୍କ ଅପେକ୍ଷା ନିସର୍ଗ ପ୍ରକୃତି ସହିତ କବି-ବ୍ୟକ୍ତିତ୍ୱର ଏକାତ୍ମ ଅଧିକ ମଧୁର ଓ ହୃଦୟସ୍ପର୍ଶୀ ଭାବରେ ପ୍ରକାଶିତ ହୋଇଛି, ଯଥା –



"ଜହ୍ନ ଆସି ନଈଟାକୁ କରିଥିଲା ତମ୍ବାପଟାଟିଏ / ଚିତ୍ର ପରି ଝୁଲିଝୁଲି ଆସୁଥିଲା କେତେଖଣ୍ଡି ନାଆ / କୈବର୍ତ୍ତ କଣ୍ଠର ସ୍ୱର ଲଇକ୍ଷଣ ଯାଉଥିଲେ ମୃଗ ମାରି ମାରି / ଅନ୍ଧାରରେ ଦିଶୁଥିଲା ଆଲୁଅର ନିରିମାଖି ଗାଆଁ ।"

କବି ତପନ ପଟ୍ଟନାୟକଙ୍କ କବିତାରେ ଚିଲିକା ଗୋଟିଏ ବିଶେଷ ଅଂଶ। କବି ନିଜେ ବୋଧହୁଏ ସେହି ସତ୍ତା ଯିଏ "ଚିଲିକାର ଧୋବଲା ଚଢ଼େଇ ପରି / ନୀଳହ୍ରଦ ଏପାରିରେ / କିଏ ଜଣେ ଚାହିଁ ବସିଥାଏ।" ଚିଲିକା ତାଙ୍କ କବିତାରେ ଜୀବନର ଉଦ୍‌ଭାସ। ତାକୁ କ'ଣ ଏତେ ସହଜରେ ବୁଝିହୁଏ ? "ଚିଲିକାର ରୂପ / ନାନା ରଙ୍ଗ ଓ ବେରଙ୍ଗ / ଜୀବନର ବହୁକଥା/ ଅବୁଝା ଅସ୍ପଷ୍ଟ ରହେ / ହଂସରାଳି ଗୀତ ଗାଇଗାଇ / ଫେରିଯାଏ / ମାମୁ ଭଣଜାର / ଉତ୍ତୁଙ୍ଗ ଶିଖର ଦେଇ / ମାନସରୋବରରେ / ଅପୂର୍ବ ରୂପବତୀ କନ୍ୟା ହେବା ପାଇଁ।" 'ଛୋଟ ମୋର ଗାଁଟି'ରେ ଜୀବନଚିତା ଜଳିବା ଆଶା ଭଳି ତପନ ମଧ୍ୟ ଚିଲିକା କୂଳରେ 'ଛୋଟ ଶିଖାଟିଏ' ହେବା ପାଇଁ ଯେ ଚାହାନ୍ତି ସେତିକି ନୁହେଁ, ବରଂ ତାଙ୍କର ଇଚ୍ଛା – "ତୋର ସ୍ପର୍ଶ ପାଇବାକୁ / ଆତ୍ମିକତା ବୁଝିବାକୁ / ଆର ଜନ୍ମେ ଚିଲିକା ଲୋ / ଡଙ୍ଗାଟିଏ ହେବି।" (ସ୍ମୃତିରେ ସ୍ମୃତିରେ ଚିଲିକା)

ତପନଙ୍କ କବିତାର କଳାପକ୍ଷ ମଧ୍ୟ ଆଲୋଚନାର ଅପେକ୍ଷା ରଖେ। ଏଥି ପ୍ରତି ତାଙ୍କର ସଚେତନତା ରହିଛି, କାରଣ ସେ କହନ୍ତି, "କବିତାରେ ମୂର୍ତ୍ତି ଗଢ଼ିବାଠୁ ଆଉ କିବା ଅଛି ଜଗତରେ / ଶ୍ରେଷ୍ଠ ସଫଳତା !" (ପୁନଶ୍ଚ ପୃଥିବୀ)। ପୁଣି "କବିତା ସୁନ୍ଦରୀ ଝିଅ ଗଢ଼ଣଟି ଅତି ଚମତ୍କାର / ସବୁ ତା'ର ମନଛୁଆଁ ଚଳଣି ଓ ଆଚାର ବିଚାର।" ତେଣୁ କବିତାକୁ ସୁନ୍ଦର ମନଲୋଭା କରି ଗଢ଼ିବା ପାଇଁ କବି ଯତ୍‌ପରୋନାସ୍ତି ଚେଷ୍ଟିତ। ଜଣେ ଗୀତିକାର ହୋଇଥିବାରୁ ତାଙ୍କ କବିତା ସଙ୍ଗୀତମୟୀ। ଝରଣା ପରି ପ୍ରଗଲ୍‌ଭା ଓ ନୃତ୍ୟଛନ୍ଦରେ ଗତିଶୀଳା। କବିତାର ବର୍ଣ୍ଣନା ରୀତିରେ ସତେ ଯେମିତି କବିଙ୍କ ସମସ୍ତ ପ୍ରତିଭା ନିୟୋଜିତ।

ତପନ ପଟ୍ଟନାୟକ ନାମଧେୟ କବି ଆଜି ବିଦାୟ ବେଳାରେ –
ବିସ୍ତୃତ ଏ ପୃଥିବୀକୁ କବିତାର ପ୍ରିୟ ଧାଡ଼ିଟିଏ
ଦେଇଗଲା, ପ୍ରାଣଭରା ସ୍ନେହସିକ୍ତ ମୃଦୁ ଆଲିଙ୍ଗନ
କହିଗଲା ମଣିଷକୁ, ପୃଥିବୀରେ ଆଉ କିଛି ନାହିଁ
ଖାଲି ସତ ଭଲ ପାଇବାର ଏଇ ସ୍ନିଗ୍ଧ ଆବେଦନ। 

ମୋ- ୯୪୩୮୩୬୦୫୧୬





# ତପନ ଭାଇଙ୍କ ସ୍ମୃତିରେ

**ଶ୍ରଦ୍ଧାଞ୍ଜଳି କାନୁନ୍‌ଗୋ**

ତପନ ପଟ୍ଟନାୟକଙ୍କ ସହିତ ଠିକ୍ କେବେ ଭେଟ ହୋଇଥିଲା ମନେ ପଡ଼ୁନି। ତେବେ ମନେ ଅଛି, ଦିନେ ପୁରୀରୁ ଫୋନ୍‌ଟିଏ ଆସିଲା - ତପନ ପଟ୍ଟନାୟକ କହୁଛି। ତୁମର 'ପ୍ରିୟ ବାନ୍ଧବ' ଗଳ୍ପ ଝଙ୍କାରରୁ ପଢ଼ି ଫୋନ୍ କରୁଛି।

ଖୁସି ଲାଗିଥିଲା। କାରଣ ତପନ ପଟ୍ଟନାୟକ ଆମ ସମୟର ବେଶ୍ ପରିଚିତ କବି। ତାଙ୍କର ଅନେକ କବିତା ପଢ଼ିଛି। ମନକୁ ଖୁବ୍ ଛୁଏଁ।

ଅନେକ ସମୟରେ ତାଙ୍କ ସହିତ ଭେଟ ହୋଇଛି, କଥା ହୋଇଛି। ସ୍ନେହ ପ୍ରବଣ ଦରଦୀ ମଣିଷଟିଏ। ଗୋଟିଏ ଶାନ୍ତ, ସରଳ, ଭାବପ୍ରବଣ କବିର ମନ ନେଇ ଜୀଇଁଗଲେ ଏତେ ଦିନ। ଜୀବନରେ ସଂଘର୍ଷ କିଛି କମ୍ ନ ଥିଲା। ଲଢ଼ିବାରେ ଦ୍ୱିଧା ବି ତ ନଥିଲା। ବୋଧହୁଏ ସାଧାରଣ ମଣିଷଟିଏ ଆଉ ଗୋଟିଏ କବି ଭିତରେ ଏହା ହିଁ ତଫାତ୍। କବିତାର ଶବ୍ଦମାନେ କବିକୁ ଜୀବନ ପାଖରେ ହାରିବାକୁ ଦିଅନ୍ତିନି। ଛଳଛଳ କରି ରଖନ୍ତି, ସତେଜ ରଖିଥାନ୍ତି। ଅନେକ ଥର କହିଛନ୍ତି ତୋର କବିତାଗୁଡ଼ିକ ସଜଡ଼ାସଜଡ଼ି କରି ବହିଟେ କରୁନୁ। ମୁଁ ହଁ ମାରେ। କରିପାରେନି।

ଦେହ ଖରାପ ଥିଲାବେଳେ ଦେଖିବାକୁ ଯାଇଥିଲି। ଘରସାରା ଏକ ଉଦାସୀ ଛାଇ ଖେଳି ବୁଲୁଥିଲା। ମନ ଦୁଃଖରେ ଫେରିଥିଲି। ସେଦିନ ବି କହିଥିଲେ, ତୋର ଗୋଟେ ବହି କରିବାକୁ ମୋର ଇଚ୍ଛା ଥିଲା, ମରିଯିବି ପଛେ ସେଇ କଥାଟା ହୋଇପାରିବନି। ହେଇପାରିଲାନି। ତପନ ଭାଇ ଚାଲିଗଲେ। ଗୋଟିଏ ଦାରୁଣ କଷ୍ଟ ରୋଗ ଭିତରୁ ମୁକ୍ତ କରି ଈଶ୍ୱର ତାଙ୍କୁ ପାଖକୁ ନେଇଗଲେ। ତାଙ୍କ ମୃତ୍ୟୁର ଖବର ମୋତେ ମର୍ମାହତ କଲା। ମର୍ମାହତ ବି କରିଥିବ ଓଡ଼ିଶାର ଅନେକ କବି, କଥାକାରଙ୍କୁ, କରିଥିବ ତାଙ୍କର ପ୍ରିୟ ପରିଜନଙ୍କୁ, ଚିହ୍ନା ଜଣା ପ୍ରତିଟି ମଣିଷଙ୍କୁ। କାରଣ ସମ୍ଭବତଃ ତାଙ୍କପରି ଶାନ୍ତ, ସରଳ ପ୍ରାଣ ନେଇ ବଞ୍ଚୁଥିବା ମଣିଷ ଖୁବ୍ କମ୍ ଆସନ୍ତି ଏ ପୃଥିବୀକୁ।

'ମଗ୍ନ ମୌନ'ର କବି ଏବେ ନୀରବି ଗଲେ, ଫେରିଗଲେ ଅତିନ୍ଦ୍ରିୟ ଜଗତର ନୀରବତା ଭିତରକୁ। ଈଶ୍ୱରଙ୍କ ପାଖରେ ତାଙ୍କ ଆତ୍ମାର ଶାନ୍ତି ପାଇଁ ପ୍ରାର୍ଥନା କରୁଛି।





# ଅମ୍ଳାନ ତପନ

କୌଶିକ ନାୟକ

ଏବେ କ'ଣ ଦେଖିବି
ଦେଖିବି କେବଳ ତୁମର ଛାଇ
ଯାହା ଲମ୍ବି ଯାଉଚି ବାଲୁଗାଁରୁ
ବଡ଼ଦାଣ୍ଡ ପୁଣି ଓଲଟ...ପାଲଟ
ପୁଣି ଜୀବନର ଗତି
ମାଟିରୁ ଆକାଶ, ଭୂମିରୁ ଭୂମା
ଓଲଟ ପାଲଟ ।
ଚାରି ଦଶନ୍ଧି ଧରି ତୁମସହ
ଥିଲା ମୋର ସମ୍ପର୍କ
କେତେ ଅବ୍ୟକ୍ତକୁ ବ୍ୟକ୍ତ କରୁଥିଲ
ଗୀତରେ, କଥାରେ, ଗାଥାରେ ।
ସେଦିନ ଚିଲିକାର ନୀଳାମ୍ବୁ ତଟରେ
ଦେଖା ଆମ ସମ୍ମାସାମ୍ନୀ
ତାରକ ମହାନ୍ତି ଓ 'ତମସା ତଟିନୀ'
ପୃଷ୍ଠାରେ ଶବ୍ଦ ସହ ଯୋଡି
ହୋଇଥିଲା
ଆମ ସଂମ୍ପର୍କ, ପୁଣି ଓଲଟ ପାଲଟ
କେତେବେଳେ କେତେ କଥା ।

ଦେଖ ! ଆକଶ ଝରାଏ ଲୁହ,
ବଉଦ ଫାଙ୍କରେ
ଆସିଥିଲ ସପ୍ତଅଶ୍ୱ ରଥେ
ଦେଖିବାକୁ କଳା ବଦନକୁ,
କଡ ଲେଉଟାଇ ଦେଲ
ପୁଣି ଆସିବ ଫେରି
ସେହି ସପ୍ତଅଶ୍ୱ ରଥେ ।
କଡ ଲେଉଟାଇଲେ ଆଲୋକ
ପୁଣି ଅନ୍ଧାରର ଖେଳ,
ତୁମେ କିନ୍ତୁ ଆସୁଥାଅ
କିରଣ ଦୋଳିରେ ବସି
ଦେଖିବାକୁ କାଳିଆ କାହ୍ନୁକୁ
ତୁମ ସୁନାର ଧନକୁ ॥
(କବି ତପନ ପଟ୍ଟନାୟକଙ୍କୁ
ଶ୍ରଦ୍ଧାଞ୍ଜଳି)



ବାଙ୍କୀ, କଟକ
ମୋ-୯୩୪୮୨୪୨୨୦୧





# ତପନ ଭାଇଙ୍କ ସ୍ମୃତିରେ

**ଡ. ନମିତା ଲକ୍ଷ୍ମୀ ଜଗଦ୍ଦେବ**

ଋତୁ ଆସି ଫେରିଗଲା / ଯେମିତିକି ଫେରିଗଲ ତମେ / କାହିଁକି ନିକ୍ୱଣ ଏତେ / ଋତୁ ପାଇଁ ମୋର ମନେ ମନେ !/ ସେ ବାସ୍ନାର ଆଘ୍ରାଣରେ / ଆତ୍ମା ମୋର ଚିର ବାସ୍ନାମୟ / ଜୀବନ ଆରମ୍ଭ ହେଲା ଋତୁରୁ ହିଁ / ଋତୁ ମୋର ଶେଷ ପରିଚୟ ! (କବିତା – "ଋତୁର ବାସ୍ନାରେ")

ଋତୁର ବାସ୍ନାରେ ସଦା ବିଭୋର ପ୍ରାଣପକ୍ଷୀଟି ଉଡ଼ିଯାଇଛି। ବୋଧହୁଏ ଅଭିମାନରେ ! ଫେରିବାର କଥା କହିଯାଇନି କାହାକୁ। କିଛି ଦେଇନି ତା' ସାଥିରେ ତା'ର ବା କ'ଣ ଥିଲା ? ଛଳ ଛଳ ଯୋଡ଼ିଏ ଆଖି, ଆଉ ତଳ ତଳ ହୃଦୟଟିଏ। ସାରା ଜୀବନର ସୁଖ, ଦୁଃଖ, ହସକାନ୍ଦ, ଆବେଗ, ଅନୁରାଗକୁ ଚିପୁଡ଼ି ନିଗାଡ଼ି ତିଆରି କରିଯାଇଛି କବିତାର ଏକ ବିଶାଳ ସୌଧ। ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଜୀବନର ସକଳ ଐଶ୍ୱର୍ଯ୍ୟ ଦାନ କରିସାରି ନିଜକୁ ନିଃସ୍ୱ କରିଦେଇ ଏବେ ଉଭାନ୍। କିଏ କହିବ କେବେ ସେ ଫେରିବ। ଫେରିବ କି ନାହିଁ। କିନ୍ତୁ ମୁଁ ଜୋର୍ ଦେଇ କହିବି, "ପୁଣି ସେ ଫେରିବ / ଆଜି ଅବା କାଲି / ଅନେକ ଉଦୟ, ଅସ୍ତ ଦେଖି ଦେଖି / ଅପେକ୍ଷାରେ ସାରା ଜନ୍ମ ସାରେ।"(କବିତା – "ହରିହର ସାମନ୍ତରାୟ)

ତପନ ଭାଇ ଥିଲେ ଶତକଡ଼ା ଶହେରୁ ଶହେ କବି। ପ୍ରିୟ ଥିଲା ଋତୁର ବାସ୍ନା, ମାଟିର ଗନ୍ଧ, ଚାନ୍ଦିନୀ ରାତିର ମାୟା, "ଫୁଲର ବଗିଚା / ନଦୀ ଆଉ ବେଳାଭୂମି / ଶିପ ଓ ଶାମୁକା / ଅଗ୍ନାଅଗ୍ନି ବନସ୍ତ / ଏକୁଟିଆ ପକ୍ଷୀଟିଏ / କବିର ତ ସବୁଠାରୁ ପ୍ରିୟ"। (ଆୟୁଷ୍ମାନ କବି)

ସାରା ଜୀବନ "ଛାଇ ଛାଇ ଛଳଛଳ ଗୀତ" ଗାଇଥିବା ପକ୍ଷୀଟି କ'ଣ ତା'ମାଟି, ପାଣି, ପବନର ମୋହ ଋତୁର ବାସ୍ନାକୁ ଛାଡ଼ି ରହିପାରିବ ? ସଅଳ ହେଉ ବା ଡେରି, ସେ ନିଶ୍ଚେ ଫେରିବ, ପୁଣି ଜୀବନ ସଙ୍ଗୀତ ଗାଇ ଚାଲିବ, ସମୟର ସ୍ରୋତ ସାଥିରେ, ହଜାଇ ଦେଇ ଋତୁଙ୍କ ମେଳରେ।

ତପନ ଭାଇ ଆଜି ନାହାନ୍ତି। ସ୍ଥୁଳ ଶରୀର ପଞ୍ଚଭୂତରେ ଲୀନ ହୋଇ ସାରିଛି। କିନ୍ତୁ; ସେ ଅଛନ୍ତି ଆମ ଗହଣରେ ସୂକ୍ଷ୍ମ ଭାବରେ, ତାଙ୍କୁ ଭଲପାଉଥିବା



ଶହ ଶହ ମଣିଷଙ୍କ ହୃଦୟରେ । ସୃଷ୍ଟି କରିଥିବା ଶହ ଶହ ଗୀତ, କବିତା ମଧ୍ୟରେ । ସେ ସତରେ ମୃତ୍ୟୁଞ୍ଜୟୀ ।

"ତପନ ଭାଇ ଚାଲିଗଲେ" ଶୁଣିଲି କମଳ ଭାଇଙ୍କଠାରୁ ସେଦିନ ଫୋନ୍‌ରେ । ଅନର୍ସ ଶ୍ରେଣୀରେ ପଢ଼ାଉଥିଲି । ହଠାତ୍ ହତବାକ୍ ହୋଇଗଲି । ଗୋଡ଼ ତଳୁ ମାଟି ଖସିଗଲା ଭଳି ଲାଗିଲା । ଛାତ୍ରଛାତ୍ରୀମାନେ ବୁଝିପାରିଲେ ନାହିଁ ମୋର କ'ଣ ହେଲା ? ତା'ପରେ ସମ୍ଭାଳି ନେଲି । ତାଙ୍କ ଅବର୍ତ୍ତମାନ ଥିଲା ମୋ ପାଇଁ ଏକ ବ୍ୟକ୍ତିଗତ ଟ୍ରାଜେଡ଼ି । ଏଭଳି ଏକ ସମୟ ଆସିବ, ଆଉ ତପନ ଭାଇ ନ ଥିବେ, ଏକଥା ମୁଁ କେବେ ଭାବି ନ ଥିଲି; ଯଦିଓ ସେ ଯେ ଆଉ ବେଶୀ ଦିନର ଅତିଥି ନୁହନ୍ତି, ଏ କଥା ମୁଁ ଜାଣିସାରିଥିଲି । ନିର୍ମମ ସମୟ, ଚତୁର ନିୟତି, ବଗିଚାର ଶ୍ରେଷ୍ଠ ଫୁଲଟିକୁ ଛିଣ୍ଡାଇ ଦେଇଗଲା ସବୁ କିନ୍ତୁ; ବାସ୍ନା ରହିଗଲା । ନା ସମୟ, ନା ନିୟତି, କେହି ବି ସେଇ ଦରଦୀ ଜୀବନର ସୁଗନ୍ଧକୁ ଚୋରି କରି ନେଇପାରିବେ ତାଙ୍କର ପ୍ରିୟଜନଙ୍କ ପାଖରୁ ।

ମନେପଡୁଛି ପ୍ରାୟ ବାଇଶ ବର୍ଷ ତଳର କଥା । ପୁରୀରେ ଗୋଟିଏ କବିତା ପାଠୋତ୍ସବରେ ମୁଁ ଯୋଗ ଦେଇଥିଲି । ବିଶିଷ୍ଟ କବି ହରିହର ମିଶ୍ର ମୋ କବିତା ଉପରେ ଏକ ସୁନ୍ଦର, ମାର୍ମିକ ଟିପ୍‌ପଣୀ ଦେଇଥିଲେ । ଅଳ୍ପ ସମୟ ମଧ୍ୟରେ ତପନ ଭାଇ କବିଙ୍କ ଗହଣରୁ ମୋ ପାଖକୁ ଚାଲି ଆସିଲେ ଏବଂ କହିଲେ ଝିଅ ତୋର ପାଞ୍ଚ ଦଶଟି କବିତା ମୋତେ ଦେବୁ । ତାହା ଥିଲା ମୋର ତାଙ୍କ ସହ ପ୍ରଥମ ଦେଖା । ତା'ପର ଦିନ ମୁଁ କବିତା ଦେଲି । ସେ ମାସେ ଦୁଇ ମାସ ମଧ୍ୟରେ କବିତାଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାରେ ଛପାଇଦେଲେ । ବହୁତ ଖୁସି ହୋଇଥିଲି । କିଛିଦିନ ପରେ ସେ ତାଙ୍କର ଶ୍ରେଷ୍ଠ କବିତା ସଂକଳନ "ରତୁର ବାସ୍ନାରେ" ମୋତେ ଇଂରାଜୀରେ ଅନୁବାଦ କରିବା ପାଇଁ କହିଲେ, ଯଦିଓ ଅନୁବାଦକାର୍ଯ୍ୟଟି ଚଞ୍ଚଳ ସରିଗଲା, ବିଭିନ୍ନ କାରଣରୁ ପ୍ରକାଶନରେ ଡେରି ହୋଇଗଲା । ସଂଯୋଗବଶତଃ, ୨୦୧୯ ମସିହାରେ ଆମେରିକାସ୍ଥିତ ଓଡ଼ିଶାର ସୁନାମଧନ୍ୟ କବି ଓ ପ୍ରକାଶକ ସତ୍ୟ ପଟ୍ଟନାୟକଙ୍କ ସହ ଯୋଗାଯୋଗ ହେଲା । ସେ ତପନ ଭାଇଙ୍କ କଥା ଶୁଣି ତତ୍‌କ୍ଷଣାତ୍ ରାଜି ହୋଇଗଲେ ଏବଂ ତାଙ୍କ ଡବଲିନ୍(ଓହିଓ) ସ୍ଥିତ ବ୍ଲାକ୍ ଇଗଲ୍ ବୁକ୍‌ସ ଦ୍ୱାରା ପ୍ରକାଶିତ କଲେ । ବିନୀତ ହୃଦୟରେ ପୁସ୍ତକଟି





ଆମାଜନ୍‌ରେ ଉପଲବ୍ଧ କରାଇ, ଡବ୍‌ଲିନ୍ ମେଟ୍ରୋପଲିଟାନ୍ ପାଠାଗାରରେ ସ୍ଥାନିତ କରାଇଲେ। ବହିଟିର ଶିରୋନାମା ଥିଲା, "ମାଇଁ ଲଭ୍, ମାଇଁ ସିଜନ୍‌ସ"। ବହିଟିକୁ ମୁଁ ନେଇ ଯେଉଁଦିନ ଶଯ୍ୟାଶାୟୀ ତପନ ଭାଇଙ୍କ ହାତରେ ଦେଲି, କି ଅପୂର୍ବ ପୁଲକରେ ଶିହରି ଉଠିଲେ ତପନ ଭାଇ ! ସେଇ ମୁହୂର୍ତ୍ତର ଉପଲବ୍ଧି ମୋ ହୃଦୟ ପଟରେ ଛାପି ହୋଇ ରହିଯାଇଛି ଏବଂ ରହିଥିବ ମଧ୍ୟ। ତାକୁ କେହି ଲିଭାଇ ପାରିବେ ନାହିଁ, ନା ସମୟ, ନା ନିୟତି।

ତପନ ଭାଇ, ତୁମେ ଏବେ ବାସିନ୍ଦା, ଦେବଲୋକଙ୍କର। ମୁଁ ଧୂଳି ଧୂସରିତ ତୁମ ପ୍ରିୟ ଧରଣୀରେ। ଗ୍ରହଣ କର ମୋର ଭକ୍ତିପୂତ ଅର୍ଘ୍ୟ, ମୋର ଶତ ଶତ ପ୍ରଣାମ।

*ଫୋନ୍: ୯୬୬୮୯୮୧୨୨୫*







# ତପନ ଭାଇ ମୋର ପ୍ରେରଣା

**ଅମ୍ବିକା ପ୍ରସାଦ ସାମନ୍ତରାୟ**

ତପନ ଭାଇଙ୍କର ଘର ଆମ ସାହିରେ। ତାଙ୍କ ପରିବାର ସହିତ ଆମ ପରିବାରର ନିବିଡ଼ ସଂପର୍କ, କାରଣ ତାଙ୍କ ବାପା ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକ ଆମ ବାପାଙ୍କର ପରମ ବନ୍ଧୁ ଥିଲେ। ମୋ ବାପାଙ୍କର ସାହିତ୍ୟ ଓ ସଙ୍ଗୀତ ପ୍ରତି ପ୍ରଗାଢ଼ ଅନୁରାଗ ଥିଲାବେଳେ ସ୍ୱର୍ଗତ ପଦ୍ମ ଦାଦା ଉଭୟ କ୍ଷେତ୍ରରେ ଉତ୍ତୁଙ୍ଗ ଶିଖର ଛୁଇଁଥିଲେ। ସାହିତ୍ୟ ଓ ସଙ୍ଗୀତ କ୍ଷେତ୍ରରେ ଏହି ପରିବାରର ଅବଦାନ ଅନସ୍ୱୀକାର୍ଯ୍ୟ।

ମୁଁ କଲେଜରେ ପଢୁଥିଲାବେଳେ ତପନ ଭାଇଙ୍କର ଉଚ୍ଚାଙ୍ଗ ବ୍ୟକ୍ତିତ୍ୱକୁ ବୁଝିବାର ସାମର୍ଥ୍ୟ ମୋର ନ ଥିଲା। କେବଳ ନମସ୍କାରଟିଏ ପକାଇ ଦେଇ ତାଙ୍କ ପ୍ରତି ମୋର ଭକ୍ତିକୁ ବ୍ୟକ୍ତ କରୁଥିଲି। ପରବର୍ତ୍ତୀ କାଳରେ ତାଙ୍କର ନିକଟରେ ହେଲି। ସଙ୍ଗୀତ ଶିକ୍ଷା କରିବାକୁ ସେ ମୋତେ ପ୍ରବର୍ତ୍ତାଇଥିଲେ, କାରଣ ମୁଁ ଗୀତ ଗାଉଥିବାର ସେ ଜାଣିଥିଲେ। ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀରେ ମୋର ଆଡ୍‌ମିଶନ୍ କରିବାକୁ ଉକ୍ତ ଅନୁଷ୍ଠାନ ସହିତ ଯୋଗାଯୋଗ କରିଥିଲେ। କିନ୍ତୁ ଆଡ୍‌ମିଶନ୍ ପାଇଁ ଥିବା ସର୍ବନିମ୍ନ ବୟସ ଯୋଗ୍ୟତାରେ ମୁଁ ଅକୃତକାର୍ଯ୍ୟ ହେଲି। ଲେଖାଲେଖି କରିବାକୁ ମଧ୍ୟ ମୋତେ ଉତ୍ସାହିତ କରିଥିଲେ ଓ ମୋର କିଛି କବିତା ନେଇ ବିଭିନ୍ନ ପତ୍ରପତ୍ରିକାରେ ଛାପି ଦେଲେ। ମୋର ପ୍ରଥମ କବିତା ସଂକଳନ 'ନିର୍ବିକଳ୍ପ'କୁ ସ୍ୱନାମଧନ୍ୟ କବି ଗିରିଜା କୁମାର ବଳିୟାରସିଂଙ୍କର ପ୍ରେସ୍‌ରେ ଛାପି ଆଣିଲେ। ସେହି ଦିନ ତାଙ୍କ ଆଗରେ ମୋ ମୁଣ୍ଡ ନଇଁଗଲା କୃତଜ୍ଞତାରେ।

ମୁଁ ଯେଉଁ ଜାଗାକୁ ଯାଇଛି ତାଙ୍କ ନାଆଁ ଶୁଣିଛି। ଅନେକ ଲୋକ ମୋତେ ପଚାରିଛନ୍ତି, "ତମ ଘର ବାଲୁଗାଁରେ ? ତପନ ପଟ୍ଟନାୟକଙ୍କୁ ଜାଣିଚୁ ?" ଏ କଥା ଶୁଣି ମୁଁ ଗର୍ବ ଅନୁଭବ କରେ। ଜଣେ ପ୍ରତିଷ୍ଠିତ କବି ଓ ଗୀତିକାର ଭାବରେ ସେ ଓଡ଼ିଶାର ପୁରପଲ୍ଲୀରେ ପରିଚିତ। କିନ୍ତୁ ନିଜ ଜନ୍ମମାଟି ବାଲୁଗାଁର ଠିକଣା କେବେ ବଦଳାଇ ନାହାନ୍ତି। ତାଙ୍କର ପ୍ରତ୍ୟେକ ଲେଖାର ଶେଷରେ ଥାଏ – 'ବାଲୁଗାଁ, ଖୋର୍ଦ୍ଧା'। ତପନ ଭାଇଙ୍କର ବ୍ୟକ୍ତିସତ୍ତା ହଜିଯାଇଛି ସତ, କିନ୍ତୁ ସ୍ମୃତି ସଭାରେ ସେ ସର୍ବଦା ସଂଜୀବିତ। ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି, ତାଙ୍କ ଆତ୍ମାର ସଦ୍‌ଗତି ହେଉ ଓ ତାଙ୍କ ପରିବାର କୁଶଳରେ ଜୀବନ କାଟନ୍ତୁ।

*ମୋ : ୯୪୩୭୧୭୦୬୯୨*





# କେବଳ ଗୋଟିଏ ଠିକଣା

## ଡକ୍ଟର କୈଳାସ ଚନ୍ଦ୍ର ମହାରଣା

କଲେଜରେ ପଢିବା ବେଳେ ପତ୍ର ପତ୍ରିକାରେ କେତେକ ଲେଖକଙ୍କ ଠିକଣା ମୋ ମାନସପଟରେ ଲେସି ହୋଇଯାଇଥିଲା । ସେଥିରୁ ଗୋଟିଏ ଥିଲା, ତପନ ପଟ୍ଟନାୟକ, ବାଲୁଗାଁ, ଖୋର୍ଦ୍ଧା । ବାଲୁଗାଁ ମହାବିଦ୍ୟାଳୟରେ ୧୯୯୪ ମସିହାରେ ଯୋଗଦେବାର ଦୁଇଦିନ ପରେ ତପନ ଭାଇଙ୍କୁ ଖୋଜି ଖୋଜି ପହଂଚିଲି ବାଲୁଗାଁ ସାମନ୍ତରାପୁର ସ୍ଥିତ ତାଙ୍କ ବାସଭବନରେ । ଖୁବ ଖୁସି ହେଲେ । ଖୋର୍ଦ୍ଧାର ସାହିତ୍ୟିକ ମାନଙ୍କ ସମ୍ପର୍କରେ ଅଳ୍ପ କଥା ହେଲେ । କହିଲେ, କାଲି ଇଲେକ୍ଟ୍ରିକ ଅଫିସକୁ ଆସିବୁ, କଥା ହେବା । ଆତ୍ମୀୟତାରେ ମୁଁ ବାନ୍ଧି ହୋଇଗଲି । ପ୍ରତିଦିନ ଦେଖା ହେଲା ମାତ୍ରେ କିଛି ଖାଦ୍ୟରେ ଆପ୍ୟାୟିତ କରନ୍ତି । ଅନେକ ସମୟରେ ତାଙ୍କ ସ୍କୁଟରରେ ବସାଇ ମୋତେ ବିଭିନ୍ନ ସ୍ଥାନକୁ ନେଇଛନ୍ତି ଓ ଅଂଚଳର ବିଶିଷ୍ଟ ବ୍ୟକ୍ତି, ସାମ୍ବାଦିକ ଓ ସାହିତ୍ୟିକ ମାନଙ୍କ ସଙ୍ଗେ ମୋର ପରିଚୟ କରାଇଛନ୍ତି । (ତାଙ୍କ ସାନ୍ନିଧ ଯୋଗୁଁ ମୋର ବ୍ୟକ୍ତିଗତ ଜୀବନ ଓ ସାରସ୍ୱତ ଜୀବନ ପ୍ରଭାବିତ ହୋଇଛି । ତପନଭାଇଙ୍କ ଦିଗଦର୍ଶନ ଓ ସଂଯୋଜନାରେ ବାଲୁଗାଁରେ ଆୟୋଜିତ ହୋଇଛି ଅନେକ ସାହିତ୍ୟ ଓ ସାଂସ୍କୃତିକ ଉତ୍ସବ । ଏହାଦ୍ୱାରା ମୋର ସାଙ୍ଗଠନିକ ଓ ସର୍ଜନାତ୍ମକ ଅନୁରାଗ ବିକଶିତ ହୋଇଛି । ଚିଲିକା ବୋଇତ ବନ୍ଦାଣ ମଞ୍ଚରେ କବିତା ପାଠ ଉତ୍ସବ, ଚିଲିକା ସଂଗୀତ ସାହିତ୍ୟ ପରିଷଦ ଆୟୋଜିତ ଭଞ୍ଜ ଜୟନ୍ତୀ, ବହୁଭାଷୀ ଜାତୀୟ କବି ସମ୍ମେଳନ, କୃଷ୍ଣଚନ୍ଦ୍ର ତ୍ରିପାଠୀ ଶ୍ରାଦ୍ଧଉତ୍ସବ, ଚିଲିକା ସାହିତ୍ୟ ସମାଜର ବିବିଧ ସାରସ୍ୱତ କାର୍ଯ୍ୟକ୍ରମ ଆୟୋଜନରେ ସହଯୋଗ କରିବାର ଅନନ୍ୟ ଅନୁଭୂତି କେବେ ବି ଭୁଲିବାର ନୁହେଁ । ଲୋକପ୍ରିୟ ଗୀତିକାର ଭାବରେ କଟକ ଆକାଶବାଣୀ ସହିତ ତାଙ୍କର ପରିଚୟ ଥିବାରୁ ଏକଦା ବାଲୁଗାଁ ମହାବିଦ୍ୟାଳୟରେ ଆୟୋଜନ କରିଥିଲେ ଆକାଶବାଣୀ ଦେଶାତ୍ମବୋଧକ କବିତା ପାଠୋତ୍ସବ । ଖୁବ ସଫଳ ହୋଇଥିଲା ଏହି କାର୍ଯ୍ୟକ୍ରମ ।)

ପାଇକ କବି କୃଷ୍ଣ ଚନ୍ଦ୍ର ତ୍ରିପାଠୀଙ୍କର ସେ ଥିଲେ ପ୍ରିୟ ମଣିଷ । ପାଇକ କବିଙ୍କ ବିୟୋଗରେ କିପରି ମର୍ମାହତ ହୋଇଥିଲେ ତାହା ମୁଁ ଦେଖିଛି । ତାଙ୍କ ବାର୍ଷିକ ସଭା ଆୟୋଜନରେ ତପନଭାଇ, ପଦ୍ମ ମଉସା ଓ ତାଙ୍କ ଅନୁଷ୍ଠାନ ଚିଲିକା



ସଂଗୀତ ସାହିତ୍ୟ ପରିଷଦଙ୍କ ଭୂମିକା ଅବିସ୍ମରଣୀୟ । ତପନ ଭାଇ ଥିଲେ ନିରବ ସାଧକ, ଠିକ କୃଷ୍ଣ ଚନ୍ଦ୍ର ତ୍ରିପାଠୀଙ୍କ ପରି । ସବୁଥିରେ ସେ ବିଚକ୍ଷଣ : ସମ୍ପାଦନାରେ, ଯୋଗାଯୋଗରେ, କାର୍ଯ୍ୟକ୍ରମ ସଂଯୋଜନାରେ, ଅତିଥି ଚର୍ଚ୍ଚାରେ । ବାଲୁଗାଁରୁ ପ୍ରକାଶିତ ପତ୍ରିକା 'ବେଳା' ହେଉ କି ପିତା ପଦ୍ମ ଚରଣ ପଟ୍ଟନାୟକଙ୍କ ସମ୍ପାଦିତ 'ଗୁପ୍ତଚର' ହେଉ କି ଶିଶୁ ସାହିତ୍ୟ ପତ୍ରିକା 'ଟିକି ଫୁଲ' ହେଉ, ତାଙ୍କ ହାତର ଶବ୍ଦ ସଂଯୋଜନା ସବୁ ପତ୍ରିକାକୁ ଆକର୍ଷଣୀୟ କରିବା ସହ ପାଠକୀୟ ମର୍ଯ୍ୟାଦା ସୃଷ୍ଟି କରିଛି । ମୁଁ ବେଳେ ବେଳେ ବାଲୁଗାଁ ମହାବିଦ୍ୟାଳୟ ମୁଖପତ୍ର 'ନୀଳାମ୍ବୁ'ର ସମ୍ପାଦନା କଲାବେଳେ ତାଙ୍କ ସାହାଯ୍ୟ ଲୋଡୁଥିଲି । ସେ ବି ନିଖୁଣ ସମ୍ପାଦନା ପାଇଁ ଅନେକ ସମୟ ଦେଉଥିଲେ ।

ତପନଭାଇ ପୁରୀ ବଦଳି ହେବା ଯାଏଁ ତାଙ୍କ ସାନ୍ନିଧ ମୋ ପାଇଁ ଅବିସ୍ମରଣୀୟ । ଅନେକ ସନ୍ଧ୍ୟା ବିତିଛି ଚିଲିକା କୂଳରେ, ପାନ୍ଥ ନିବାସରେ ଅଶୋକା ଲଜ ଓ ଚା ଖଟିରେ । ଯା ମଧ୍ୟରେ ଅନେଜ କଥା, ଅନେକ ବ୍ୟଥା । ପିଲାଦିନର ସଜଳ ସ୍ମୃତିର କଥା । ଅନେକ ରବିବାର ଅପରାହ୍ଣ କଟିଛି ପଦ୍ମ ମଉସାଙ୍କ ହାତ ଗଢ଼ା ଅନୁଷ୍ଠାନ ଚିଲିକା ସଂଗୀତ ସାହିତ୍ୟ ପରିଷଦରେ । କେବେ କେବେ ନବୀନ ସୁନ୍ଦର ସୁବୁଦ୍ଧିଙ୍କ ପ୍ରିଣ୍ଟ ଓ୍ୱେଲରେ । ତପନ ଭାଇ ମେଳାପୀ, ବନ୍ଧୁ ବତ୍ସଳ, ଦୁଃଖରେ ସମଭାଗୀ । ତାଙ୍କର ଦୁଃଖ ତ ଅସୁମାରୀ । ଜୀବନ ନାଟକର ଆରମ୍ଭରୁ ଶେଷ ଦୃଶ୍ୟ ଯାଏଁ ଅଧିକାଂଶ ସମୟ ସେ କେବଳ ଦୁଃଖକୁ ସାମ୍ନା କରିଛନ୍ତି । ଖୁବ କମ ପ୍ରକାଶ କରନ୍ତି, ବେଶୀ ଆତ୍ମ ମଗ୍ନ ରହନ୍ତି । ଖୁବ ଅନ୍ତର୍ମୁଖୀ ମଣିଷଟେ ସେ । କଳାକାର ପରିବାରରେ ଜନ୍ମରୁ ଶୁଣିଛନ୍ତି ସଂଗୀତର ମୂର୍ଚ୍ଛନା କ୍ଷ ପିତା ପଦ୍ମ ଚରଣଙ୍କ ଜ୍ୟେଷ୍ଠ ପୁତ୍ର ଭାବେ ବାଲ୍ୟ କାଳରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚର ପାଚେରୀ ମଧ୍ୟରେ ବ୍ୟୋମକେଶ ତ୍ରିପାଠୀ, ନଟବର ସେଣ, ବାଉରୀବନ୍ଧୁ ମହାନ୍ତି, ବାଲୁଙ୍କେଶ୍ୱର ରଥଙ୍କ ସାନ୍ନିଧରେ ଲାଭ କରିଛନ୍ତି ରଙ୍ଗମଞ୍ଚର କଳାତ୍ମକ ମାଦକତା । ପିତାଙ୍କ ହର୍ମୋନିଅମର କାନ୍ଦଣା ଓ ଡୁବି ତବଲାର ପାଦ ଶବ୍ଦରେ ବିକଶିତ ହେଲା ତାଙ୍କ ମନ, ପ୍ରାଣ ଓ ଛଳ ଛଳ ହୃଦୟ । ସେହି ପରିବେଶର ପ୍ରଭାବ ହୁଏତ ତାଙ୍କ ସର୍ଜକ ଓ ନାଟ୍ୟକାର ପ୍ରତିଭାକୁ ଉନ୍ମୋଚିତ କରିଥିବ । ତାଙ୍କ କଲମ ମୁନରୁ ଝରି ଚାଲିଲା ଅସୁମାରୀ ଶବ୍ଦ : ଯାହା ପାର୍ଥିବ ଓ ଅପାର୍ଥିବ ଭାବ ଓ ଚେତନାକୁ ସ୍ୱଷ୍ଟ ଭାବେ





ପ୍ରକାଶ କରିବାରେ ବେଶ ସମର୍ଥ ଥିଲା । କ୍ରମଶଃ ବିରାଟ ହୋଇ ଉଠିଲା ତାଙ୍କ ସର୍ଜନ ଜୀବନ ଓ ସାମଗ୍ରିକ ଜୀବନକ୍ଷୟନ । ମିଞ୍ଜି ମିଞ୍ଜି ଡିବିରୀ ଆଲୁଅରେ ଜନ୍ମ ନେଲେ କାବ୍ୟ କବିତା, ନାଟକ, ଉପନ୍ୟାସ ଓ ସଂଗୀତ କଳାର ଯେତେ ସବୁ ଦ୍ୟୁତି ଓ ଦୀପ୍ତି । ସେ ପାଲଟିଗଲେ ଓଡିଶା ସର୍ଜନାକାଶର ପ୍ରିୟ ଗୀତିକାର, କବି । ଏଥି ସହ କଣ୍ଠ ଶିଳ୍ପୀ ନବ କିଶୋର ମିଶ୍ରଙ୍କ ସୁଲଳିତ କଣ୍ଠରେ ତପନ ଭାଇଙ୍କ ଭଜନ ' ମୁଁ ଆସିଛି ଦେଖି ମୋ କଳା ବଦନକୁ' ଉଭୟଙ୍କୁ କରିଦେଲା ଲୋକପ୍ରିୟ ଓ ପ୍ରସିଦ୍ଧ । ଗୀତଟି ହୋଇଗଲା କାଳଜୟୀ । ବାଲୁଗାଁକୁ ଯିଏ ସାହିତ୍ୟିକ କି ସଂଗୀତଜ୍ଞ ଆସୁଥିଲେ ପ୍ରଥମେ ଖୋଜା ପଡୁଥିଲା ତପନ ଭାଇଙ୍କୁ । ଭରପୁର ଅତିଥି ଚର୍ଚ୍ଚା । ଏଥିସହ ତାଙ୍କ ବିନୟୀ ଭାବ ଓ ଶ୍ରଦ୍ଧା ପଣରେ ଯେ କେହି ବି ବାନ୍ଧି ହୋଇଯାଏ । ଅନ୍ୟମାନେ ବି ସମ୍ମୋହିତ ହୋଇଯାନ୍ତି ତାଙ୍କ ସ୍ୱଭାବ ଓ ଗୁଣଗାନରେ ।

ତପନ ଭାଇଙ୍କ କବିତାର ମୁଁ ଏକ ମୁଗ୍ଧ ପାଠକ । ତାଙ୍କ ରଚିତ ଆରଜନ୍ମ, ଅସରା ଲୁହ ଅଭୁଲା ଗୀତ, ଫେରିବାର ମୂର୍ଚ୍ଛନାରେ, ଧୂପ ଦୀପ ନୈବେଦ୍ୟ ଅନିନ୍ଦିତା ଓ ଅନ୍ୟାନ୍ୟ କବିତା ଆଦି ଅନେକ ବହି ସହିତ ପଦ୍ମ ମଉସାଙ୍କ ପଦ୍ମ ପୁରବୀ ନାଟକ ସଂକଳନ ମନ ଦେଇ ପଢିଛି । ମୁଁ ଦର୍ଶନର ଛାତ୍ର ହୋଇ ଥିବାରୁ ତପନ ଭାଇଙ୍କ କବିତାରେ ପ୍ରତିଫଳିତ ଦାର୍ଶନିକ ତତ୍ତ୍ୱ ମୋତେ ମୋହିତ କରିଛି ଓ ସେ ସମ୍ପର୍କରେ ମୋର ପୁନଃ ଚିନ୍ତନ ବିକଶିତ ହୋଇଛି ।

ତପନ ଭାଇ ଖୁବ ପଠନପ୍ରିୟ । ମୋତେ କୁହନ୍ତି, କୈଳାସ, ପ୍ରଚୁର ପଢ଼, ତା ପରେ ଲେଖା ସ୍ୱତଃ ଝରି ଆସିବ । ତୁ ତ ଖାଲି ସଂଗଠନରେ ମାତିଲୁ, ପଢ଼ିବୁ କେବେ ? କେଇକ୍ଷଣ ମୁଁ ଅନୁତାପରେ ଭାଙ୍ଗି ପଡ଼େ । କେବେ ତାଙ୍କ ସାଙ୍ଗରେ କାରରେ ଯିବାବେଳେ ଅନ୍ୟ କବି ମାନଙ୍କର ବହିରୁ କେତୋଟି ଭଲ କବିତା ଆବୃତ୍ତି କରି ଶୁଣାନ୍ତି । ଖୁବ ମଧୁର ତାଙ୍କ ପଠନ ଶୈଳୀ । ଜୀବନ ଦର୍ଶନର ଅନେକ ଅଙ୍ଗେ ନିଭା କଥା କୁହନ୍ତି । ସେ ଯେମିତି ବିନମ୍ର, ସମସ୍ତଙ୍କୁ ସେ ସେପରି ଆଚରଣ କରିବାକୁ ଚାହାଁନ୍ତି । ଥରେ କହିଥିଲେ, କୈଳାସ, ଶିକ୍ଷକର ଜୀବନ ଗୋଟେ ଋଷିର ଜୀବନ ପରି । ସେ ଗୋଟେ ଜୀବନ୍ତ ଦୃଷ୍ଟାନ୍ତ । ତାକୁ ଦେଖି ଅନ୍ୟମାନେ ଶିଖିବେ । ଏବେ ଏହି ସବୁ ଗୁଣ ଶିକ୍ଷକ ମାନଙ୍କ ଠାରେ ଦେଖିବାକୁ ମିଳୁନି । ତାଙ୍କ ସହିତ ଅସୁମାରୀ ଅନୁଭୂତି, ଅନେକ କଥା । ୨୦୧୯ ମସିହା





ଚିଲିକା ବୋଇତ ବନ୍ଦାଣ ମହୋତ୍ସବ ଅବସରରେ ତାଙ୍କୁ ଚିଲିକା ସମ୍ମାନରେ ସମ୍ବର୍ଦ୍ଧିତ କରାଯାଇଥିଲା । ସଭା ମଞ୍ଚରେ ତାଙ୍କ କୃତଜ୍ଞତାରେ ଭରି ରହିଥିଲା ବାଲୁଗାଁ ମାଟି ପାଇଁ ଅଜସ୍ର ପ୍ରୀତି । କରୋନା ସମୟରେ ବନ୍ଧୁ ଅମ୍ବିକା ପ୍ରସାଦ ସାମନ୍ତରାୟଙ୍କ ସହ ଭୁବନେଶ୍ୱର ବାସଭବନ ଯାଇଥିଲି । ଆତ୍ମୀୟତାର ସେହି ଅଭୁଲା କଥା ମନେ ପଡିଲେ, ଆଖି ଜକେଇ ଆସେ । ତାଙ୍କ ଅବର୍ତ୍ତମାନରେ ବାଲୁଗାଁ ବାଣପୁର ଅଂଚଳର ସାରସ୍ୱତ ପରିମଣ୍ଡଳରେ ଏକ ବିରାଟ ଶୂନ୍ୟତା ଦେଖା ଦେଇଛି । କିଛି ବି ଭାଷା ନାହିଁ । ତାଙ୍କର ପ୍ରତିଟି ଲେଖା ଥିବା ଠିକଣା, ବାଲୁଗାଁ, ଖୋର୍ଦ୍ଧା ଆଉ ଦେଖିବାକୁ ମିଳିବ ନାହିଁ । କି ଅସୀମ ମାତୃଭୂମି ପ୍ରୀତି ! ଭୁବନେଶ୍ୱରରେ ରହନ୍ତୁ କି ପୁରୀରେ ରହନ୍ତୁ, ତାଙ୍କ ଠିକଣା ସବୁବେଳେ ଗୋଟିଏ । ତାଙ୍କ ପ୍ରିୟ ଚିଲିକା, ବାଲୁଗାଁ, ବାଣପୁରକୁ ସେ ଜୀବନଠୁଁ ବେଶୀ ଭଲ ପାଆନ୍ତି । ତାଙ୍କ ପୁଅ ତଥା ଆମ ଛାତ୍ର ସମ୍ବିତର ସେବା ଓ ତ୍ୟାଗ ଅସୀମ । ସମ୍ବିତ ଓ ଭାଉଜଙ୍କୁ ଏହି ଅସୀମ ଦୁଃଖ ସହିବା ପାଇଁ ଈଶ୍ୱର ଧୈର୍ଯ୍ୟ ପ୍ରଦାନ କରନ୍ତୁ ଏହା ହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।









# ସେ ଗୋଟେ ଗୀତର ନାୟକ

ତପନ ମହାପାତ୍ର

ଆଜି ଆପଣଙ୍କ କବିତା 'ସମାଜ'ରୁ ପଢ଼ିଲି । ଆଜି ପଢ଼ିଲି 'ଧରିତ୍ରୀ'ରୁ ।

ମୁଁ କିଛି କବିତା ଲେଖିଛି । କିନ୍ତୁ ପ୍ରକାଶ କରିବାକୁ ଦେଉନଥିଲି । ଅଥଚ ସବୁବେଳେ ଶୁଣୁଥିଲି ଏମିତି କିଛି କଥା ମୋତେ ଅଳ୍ପ ଜାଣିଥିବା ସାଥି ସାଙ୍ଗଙ୍କ ଠାରୁ । ପ୍ରଥମେ ଆଶ୍ଚର୍ଯ୍ୟ ହୁଏ କାଳେ କେଉଁ ପୁରୁଣା କବିତା ପାଇ କିଏ ଛାପି ଦେଇଥିବ ଭାବି । ପରେ ସେ ଖବର କାଗଜ ଖୋଜି ପାଇ ପଢ଼ି ହସି ଦିଏ । ହେ.... ହେ....ତପନ ପଟ୍ଟନାୟକ । କେବେ ଦୁଃଖ ପାଏ, ଏମିତି କାହିଁକି ମୁଁ ଲେଖି ପାରୁନି ! ଲେଖିବି ନିଶ୍ଚେ । କୋଉ ଲେଖି ପାରିଲି ? ମୋତେ ପ୍ରଚାରିତ କରିବାରେ ତପନ ଭାଇ ଯେ ଏମିତି ଗୋଟେ ଭୂମିକା ନେଇଛନ୍ତି ସେ କଥା ମୁଁ କାହାକୁ କହି ପାରିନି । ଏପିରିକି ତପନ ଭାଇଙ୍କୁ ବି ।

ତେବେ ମୋର ଦୁଃଖ ତପନ ଭାଇଙ୍କ ବିଷୟରେ ମୁଁ ଯେତେ ଶୁଣିଛି ସେତେ ମିଶି ପାରିନି । ଖୋର୍ଦ୍ଧାରେ ବଂଶୀଧର ରାଉତଙ୍କଠାରୁ ଅନେକ ଥର ଶୁଣିଥିଲି ତାଙ୍କ ବିଷୟରେ । ପରେ, ଅଧ୍ୟାପକ ପ୍ରଫୁଲ୍ଲ ମହାନ୍ତି ଯିଏ 'ମୁଁ ଆସିଛି ଦେଖି ମୋ କଳା ବଦନକୁ 'ଗୀତର ସ୍ୱର ଦେଇଥିଲେ । ଯିଏ ଗାଇଥିଲେ, ଗାୟକ ନବ କିଶୋର ମିଶ୍ରଙ୍କଠାରୁ । କେମିତି ତିନିହେଁ ମିଶି ଗୋଟେ ଗୋଟେ ଗୀତର ସ୍ୱର ଖଞ୍ଜିବାରେ ରାତି ପାହି ଯାଏ, କେମିତି କେଉଁ ନାଟକରେ ଗୀତ ଲେଖା ଯାଏ, ଭୋଜି ଭାତ ହୁଏ । ସେ ଆସର ବିଷୟରେ ଶୁଣି ଈର୍ଷା ହୁଏ ମୋର । କାରଣ ନୟାଗଡ଼ରେ ଯେଉଁ ପୁରୁଣା ସହରରେ ରହୁଥିଲେ ତପନ ପଟ୍ଟନାୟକ, ତାଙ୍କ ରହିବା ସ୍ଥାନରୁ ଛ' ସାତ ଘର ଛାଡ଼ି ମୁଁ ରହୁଥିଲି । କେତେ କେତେ ଥର ତାଙ୍କ ରହିବା ସ୍ଥାନ ମୋତେ ଅନ୍ୟମନସ୍କ କରିଛି । ସେ ଗୀତ 'ମୁଁ ଆସିଛି ଦେଖି ମୋ କଳା ବଦନକୁ, 'ମୋତେ ଅଥୟ କରିଛି । ତାଙ୍କ ନୟାଗଡ଼ ଅନୁପସ୍ଥିତିରେ ଉପସ୍ଥିତିକୁ ଉପଲବ୍ଧି କରିଛି । ହଠାତ୍ ଦିନେ ଚାଲିଗଲେ, ପ୍ରଫୁଲ୍ଲ ମହାନ୍ତି । କେତେ ସ୍ନେହ କରୁଥିଲେ ମୋତେ ! ସେ ଯିବା ପରେ ପରେ କାହିଁକି କେଜାଣି ମନ ଭିତରେ ଚାଲି ଆସିଲା, ଏ ସମୟ ରହିବ ନାହିଁ । ଆପଣ ଥିଲେ ଏ ନୟାଗଡ଼ରେ ....ବଦଳି ହୋଇ ଅନ୍ୟତ୍ର ଗଲେ....ଆଜି ମୁଁ ଅଛି, କାଲିକୁ ଆଉ



କେଉଁଠି । କିନ୍ତୁ ସଙ୍ଗୀତଜ୍ଞ ପ୍ରଫୁଲ୍ଲ ମହାନ୍ତି ...କିଛି ଘର ଛାଡ଼ି ଆପଣ...ଆଉ କିଛି ଘର ଛାଡ଼ି ମୁଁ .... ସମୟ ଏକ ନହେଲେ ବି କେବେ ଗୋଟିଏ ଧାଡିରେ ଥିଲେ ଏମିତି କଥାକୁ ସ୍ମରଣକୁ ନେବ କିଏ ?

ସେ ଘରେ ରହିଲି ଦୀର୍ଘ ସତର ଅଠର ବର୍ଷ । ' ଛବି ମଣିଷ' ମୋର ପ୍ରଥମ ଗପ ବହି ପରେ ପରେ 'କାଉଁରି ପାନିଆ', 'ବିସ୍ମୟ ଏକ ବିନ୍ଦୁ' 'ଏଠି ପ୍ରଜାପତି ନାହିଁ' । 'ଝିଅଠାରୁ ଉଧାର ଆଣି' ବହି ଧରି ମୁଁ ବି ସେଠାରୁ ଫେରି ଆସୁଥିଲି । ସେଇ ସମୟକୁ ଘନିଷ୍ଠ ହୋଇ ଉଠିଥିଲି ଗାୟକ ନବ କିଶୋର ମିଶ୍ରଙ୍କ ସହିତ । ଯୋଜନା କଲି ଛୋଟ କି ବଡ଼ ହେଉ ପଛେ ତାଙ୍କ ଜୀବନୀଟେ ଲେଖିବି । ଯେଉଁଥିରେ ଥିବ ଗୀତ ଗୀତର ସେ ସମୟ ।

ଯାହା ଯାହା ଜାଣିଲି ସବୁ ଖଂଜିଲି; ଖୋଜିଲି ତପନ ପଟ୍ଟନାୟକଙ୍କୁ । କାରଣ ପ୍ରଫୁଲ୍ଲ ମହାନ୍ତିଙ୍କୁ ହରାଇବା ପରେ ଏ ଯୋଜନା ମୋତେ ଅଧୁରା ଲାଗୁଥିଲା । ସେଥିକୁ ନବ କିଶୋର ମିଶ୍ରଙ୍କ ଜୀବନୀ ଲେଖାଯିବ ଯେଉଁଥିରେ ତପନ ପଟ୍ଟନାୟକଙ୍କ ଅନୁଭବ ଅନୁଭୂତି ରହିବନି !

କେତେଥର ଫୋନ୍ କଲି ଓ ଧରିଲେନି ଓ ଅନୁରୋଧ କଲି, ଲେଖିଲେନି । କହିଲେନି ବି କିଛି ଓ ବରଂ କେମିତି ଗୋଟେ ହତାଶ ହତାଶ ସ୍ୱର ଶୁଣିଲି । ସ୍ୱୀକାର ବି କଲେ, କ'ଣ ଏ ସମୟରେ କହିବି ? କିଛି ଭଲ ଲାଗୁନି ଓ ମୁଁ ବି ବାଧ କଲିନି । ନବ କିଶୋର ମିଶ୍ରଙ୍କ ଜୀବନୀ 'ମୋ ଗପରେ ଗୀତର ଗାୟକ' ଛପା ହୋଇ ଗଲା ଓ ସେ ବି ପଢିଲେ କେଉଁଠୁ ପାଇ ଓ ତାପରେ ଆମେ କଥା ହେଲୁ । ଅତୀତର ବେଶ କେଇ ସ୍ମୃତି ବଖାଣି ଚାଲିଲେ ସେ ଓ ଯାହାକୁ ଖଞ୍ଜି ଦେବି ଭାବିଛି 'ମୋ ଗପରେ ଗୀତର ଗାୟକ' ବହିର ଦ୍ୱିତୀୟ ସଂସ୍କରଣ ବେଳେ ।

ହେଲେ ତପନ ଭାଇ କଣ ଆଉ ଦେଖି ପାରିବେ ??? ପୁଣି ଭାବୁଛି ସେ ଯେମିତି ହେଲେ ଦେଖିବେ । କାରଣ ଏ ବହି ପଛରେ ତ ମୂଳ କାରଣ ଟି ହେଉଛି ସେ ଗୀତ । ଗାୟକ ନବ କିଶୋର ମିଶ୍ର 'ମୋ ଗପରେ ଗୀତର ଗାୟକ' ହେଲେ ତପନ ପଟ୍ଟନାୟକ – ସେ ତ ଗୀତର ନାୟକ ।

*ଶ୍ରୀ ବିହାର, ଖୋର୍ଦ୍ଧା ୭୫୨୦୫୫, ମୋ: ୭୦୭୭୧୯୪୯୮୬*









# କବିର କି ମୃତ୍ୟୁ ଥାଏ ?

ମିନତୀ ମିଶ୍ର

କବିର କି ମୃତ୍ୟୁ ଥାଏ ?
ତପନର କି ଅସ୍ତ ଥାଏ ?
ଚିରକାଳ ପ୍ରଶ୍ନବାଚୀ ଇଏ

କବିପ୍ରାଣ ମରିପାରେନା
କେବଳ ପ୍ରାଣ ଭରି ଜାଣେ
ନିର୍ଜୀବ ନିସ୍ତରଙ୍ଗ ଦେହେ
ଜୀବନକୁ ଜିଣିବା ଶିଖାଏ
ଅସାର ଜୀବନକୁ ପ୍ରାଣବନ୍ତ କରେ
ତାକୁ ଶବ୍ଦ ଅକୁଳାଣ ପଡ଼େ
ଭାବକୁ ଜୀବନ୍ୟାସ ଦେବା ପାଇଁ
ଆବେଗ ଅକୁଳାଣ ପଡ଼େ
ଅଶ୍ରୁ ପାଲଟିବା ପାଇଁ ।

ଫେରିଯିବା କ'ଣ ଏତେ ସହଜ
ମୋହ ମାୟାର ଡୋର ଶତଛିନ୍ନ କରି
ଫେରିଯିବା କ'ଣ ଏତେ ମୋହ ଯୁକ୍ତ !
ଏତେ ଏକାନ୍ତ !
ଜିଇଁବାରେ କ୍ଲାନ୍ତିପଣ କେବେ ବି
ଆସେନା
କ୍ୱଚିତ୍ ହିଁ ଆସେ କବିଟିଏର
ଜୀବନରେ
ସୀମିତ ନଥାଏ ସମନ୍ୱୟ
ଥାଏ ପ୍ରଚଣ୍ଡ ବ୍ୟାପ୍ତି
ସମର୍ପିତ ଥାଏ ଆତ୍ମା ମନ ହୃଦୟ
କବି ଭାବର ଅଖଣ୍ଡ ସମନ୍ୱୟ ପାଇଁ ।

ଚିର ମୁକ୍ତ କବିସତ୍ତା
ସନ୍ଧି କରିପାରେନା ମୃତ୍ୟୁ ସହ
ସହିଦ ଜୀବନ ବରେ
ଯୁଦ୍ଧକ୍ଷେତ୍ରରେ

ତପନ କଣ ଅସ୍ତ ଯାଆନ୍ତି ?
ଅନ୍ଧକାରରେ ବୁଡି ଯାଆନ୍ତି ?
ନା
ତାଙ୍କର ଅନୁପସ୍ଥିତି ହିଁ ଅନ୍ଧକାର
ନିତ୍ୟ ପ୍ରଣାମ ଘେନ
କବି ଗୀତିକାର !!

*ଭାରତୀୟ ଷ୍ଟେଟ୍ ବ୍ୟାଙ୍କ୍*
*ପେନସନ ଶାଖା, ଭୁବନେଶ୍ୱର*
*୯୪୩୯୫୩୭୭୦୦*





# କାହାଛାଇ ଜଟିଆ ପାହାଡ଼ ସେପାଖେ !

**ଚିନ୍ମୟ ବିବେକ**

ଅନ୍ତର୍ଦାହର ଅନ୍ୟତମ ଶିରୋନାମା କବି ଓ ପ୍ରକାଶକ ତପନ ପଟ୍ଟନାୟକ –ହାହାକାର, ବ୍ୟଥା ବେଦନା,କ୍ଷୋଭ ଓ ଦୁଃଖର ଅନବଦ୍ୟ ସମଷ୍ଟି ।ସେଥିପାଇଁ କଣ ସେ ଏତେ ନମ୍ର ଓ କୋମଳ ଚିଲିକା କୂଳର ପେଲିକାନ ଭଳି । ପୂର୍ବବର୍ତ୍ତୀ ଅବିଭକ୍ତ ପୁରୀ ଜିଲ୍ଲାର ବାଲୁଗାଁ ବାଣପୁର ନିକଟସ୍ଥ ପାହାଡ଼ ,ଜଙ୍ଗଲ ଓ ସର୍ବୋପରି ଚିଲିକାର ନୈସର୍ଗିକ ନୀଳିମା, ରଙ୍ଗବେରଙ୍ଗୀ ଚଢ଼େଇଙ୍କ କଳରବ ସତରେ ଭରିଦେଇଥିଲା ଏ ଲୋକଟି ଭିତରେ ଏତେ ଶବ୍ଦର ଝାଲର ଯେ, ସେ କବି ନହୋଇ ଆଉ କଣ ହୋଇଥାନ୍ତେ ! ଚାକିରିରୁ ଅବସର ପରେ ଥିଲା ଅନେକ ସ୍ୱପ୍ନ । ମାତ୍ର ସ୍ୱପ୍ନ ଭାଙ୍ଗିଗଲା । ଓଡ଼ିଶା ସରକାରଙ୍କ ପୂର୍ବତନ ରାଜ୍ୟ ବିଦ୍ୟୁତ୍ ବୋର୍ଡ ଅଧୀନରେ ଚାକିରି କରୁଥିବା ତପନ ପଟ୍ଟନାୟକ ବିଦ୍ୟୁତ୍ କମ୍ପାନୀ ଅଧୀନକୁ ଚାଲିଗଲେ । ତାଙ୍କୁ କୌଣସି ଅବସରକାଳୀନ ପାଣ୍ଠି ମିଳିଲା ନାହିଁ । ଦୌଡ଼ିଦୌଡ଼ି, କୋର୍ଟ ଯାଇ ବିଭିନ୍ନ ପଦାଧିକାରୀଙ୍କ ଗୋଡହାତ ଧରି ସେ କିଛି ସୁଫଳ ପାଇଲେ ନାହିଁ । ପରେପରେ ରୋଗଗ୍ରସ୍ତ ହେଲେ ଏବଂ ସେଇଥିରେ ସେ ଆଖି ବୁଜିଦେଲେ ।

କବିତାରୁ ତାଙ୍କ ସହ ସଂପର୍କ ଅନେକ ବର୍ଷର ।ପୁରୀରେ ଥିଲାବେଳେ ମୋର ଏକ କବିତା ବହି 'ଶୁଣ୍ ମଣି' ର ସେ ଥିଲେ ପ୍ରକାଶକ। ତାଙ୍କର ଅସୁସ୍ଥତା ପାଇଁ ଏହାର ପ୍ରକାଶନ ବିଳମ୍ବିତ ହୋଇଥିଲେ ମଧ୍ୟ ବଡଦାଣ୍ଡର ବଡ଼ଶଙ୍ଖ ଚା' ଖଟିରେ ତାଙ୍କୁ ଦେଖିଦେଲେ ସବୁ ଖେଦ ଉଭେଇଯାଏ। ତାଙ୍କର ଆତ୍ମୀୟତା ଓ ଅନୁରାଗ ଭୁଲିହେବ ନାହିଁ।

ଚାଳିଶ ଖଣ୍ଡରୁ ଉର୍ଦ୍ଧ୍ୱ ବହିର ରଚୟିତା ସେ । ଦୀର୍ଘ ୫୦ ବର୍ଷରୁ ଉର୍ଦ୍ଧ୍ୱ ସାହିତ୍ୟ ସାଧନା । ମାତ୍ର ରାଜ୍ୟ ଏକାଡେମି ପୁରସ୍କାରଟିଏ ତାଙ୍କୁ ମିଳିଲା ନାହିଁ। ରାଜ୍ୟ ଚାହିଁଥିଲେ ତାଙ୍କ ସ୍ୱାସ୍ଥ୍ୟର ଯତ୍ନ ନେଇପରିଥାନ୍ତା । କିନ୍ତୁ ଏସବୁ ହେଲାନାହିଁ । ସାହିତ୍ୟିକଟିଏ ଏଠି ଅଲୋଡ଼ା । ତା'ର କିଛି ଅଭାବ ଅସୁବିଧା ଯେପରି ନାହିଁ, ତା'ର ଅବଦାନ ସମାଜକୁ କିଛି ନାହିଁ । ଆମେ ଆଜି ତାଙ୍କର ପ୍ରଶଂସାମୂଳକ ଶ୍ରଦ୍ଧାଞ୍ଜଳି ଧାଡ଼ିଏ ଲେଖି ନିରବି ଯିବା । କିନ୍ତୁ ତାଙ୍କର ଆତ୍ମା କୁହୁଳୁଥିବ ସରକାରଙ୍କ





ଆଲୋଡ଼ାପଣରେ । ସାହିତ୍ୟିକର ସ୍ଥାନ କେଉଁଠି ଆମ ସମାଜରେ ! ତାଙ୍କପରି ସାହିତ୍ୟିକମାନେ ଆମ ଚାରିପାଖେ ଯଥେଷ୍ଟ । ଜୀବ ଥାଉଥାଉ ସେମାନଙ୍କର ସେବାଯତ୍ନର ଭାର ସରକାର କାହିଁକି ନେବେ ନାହିଁ ତାହା ସବୁ ସାହିତ୍ୟ ଅନୁଷ୍ଠାନର ସମ୍ମିଳିତ ସ୍ୱର ହେବା ଉଚିତ୍ ନୁହେଁ କି ? ଏ ପ୍ରଶ୍ନର ଉତ୍ତର ଖୋଜିବାକୁ ଉପଯୁକ୍ତ ସମୟ ଆସିଛି ମୁଁ ବୋଲି ଭାବୁଛି ।

ତପନ ଭାଇ ବଞ୍ଚିରହିବେ ମୋ ଭିତରେ ମୁଁ ଥିବା ପର୍ଯ୍ୟନ୍ତ ।ତାଙ୍କର ଆତ୍ମା ନିର୍ବିଘ୍ନରେ ସ୍ୱର୍ଗୀୟ ଯାତ୍ରା କରୁ - ଏହା ଜଗନ୍ନାଥଙ୍କ ନିକଟରେ କାମନା କରୁଛି ।

*- ଦଇତା ପଡ଼ା ସାହି, ପୁରୀ - ୧*







# ମୋ' ପ୍ରଥମ କବିତା ବହି 'ବାଜେ ଝିଅ'ର ପ୍ରକାଶକ କବି ତପନ ପଟ୍ଟନାୟକ

ରୁନୁ ମହାନ୍ତି

ଦୁଇ ହଜାର ଚାରି ମସିହା। କବି ତପନ ପଟ୍ଟନାୟକ (ତପନ ଭାଇ) ଖୋଜି ଖୋଜି ମୋ' ପୁରୀ ଘରକୁ ଆସିଲେ। ସାଙ୍ଗରେ ଆଣିଥିଲେ ମିଠା ପ୍ୟାକେଟ୍‌ଟିଏ। ମୁଁ ପ୍ରଥମ କରି ତପନ ଭାଇଙ୍କୁ ସେଦିନ ଦେଖିଲି।

କହିଲି, ତପନଭାଇ! ମୁଁ ଆପଣଙ୍କ ନାମରୁ ଭାବୁଥିଲି ଆପଣଙ୍କ ବୟସ ଅଳ୍ପ ହୋଇଥିବ। ସେ କହିଲେ, ତୋ' ନାଁରୁ ମୁଁ ବୁଝୁଥିଲି, ତୁ ଖୁବ୍ ଟିକିଟେ ହୋଇଥିବୁ। କିନ୍ତୁ ତୋ' କବିତା ଖୁବ୍ ମାଚ୍ୟୁଅଡ୍। ସେଥିପାଇଁ ତ ତୋତେ ଦେଖିବା ପାଇଁ ଆସିଲି। ସବୁତକ କବିତା ଦେ' ମୁଁ ତୋର ବହିଟେ କରିଦେବି। ଗିରିଜା ଭାଇଙ୍କ ପ୍ରେସରେ ଛପା ଯିବ।

ତପନ ଭାଇ ଥରକୁ ଥର ମୋ' ଘରକୁ ଆସି ଅଲରା ପଡ଼ିଥିବା କବିତାସବୁ ନେଇଯାଆନ୍ତି। ଏଣେ ମୋର ସେହି ପ୍ରଥମ ବହି ପାଇଁ କବିତା ମୋର ଲେଖା ଚାଲିଥାଏ। ବାଟରେ, ବସ୍‌ରେ, ଦିନରେ, ଗଛମୂଳେ, ରାତି ଅନ୍ଧାରରେ, ଜହ୍ନ ଆଲୁଅରେ। ସବୁବେଳେ ତପନଭାଇ ଫୋନ୍‌ରେ ପଚାରନ୍ତି - ଆଉ ଲେଖିଲୁ କିଛି ? ୪୫ଟା କବିତା ହେଲା ତ ? ଦୀର୍ଘ ଏଗାର ବର୍ଷ କବିତା ଲେଖିପାରିନଥିବା ମୋ' ହାତ ସେତେବେଳେ ଖୁବ୍ ଚଞ୍ଚଳ ହୋଇଉଠୁଥାଏ। ବହିର ନାଁ କ'ଣ ଦିଆଯିବ ? ଭାବୁଥାଏ, ଅପଦେବୀ ନା ବାଜେଝିଅ। ଗିରିଜାଭାଇ ସେତେବେଳେ ସବୁଦିନ ଉତ୍ସାହିତ କରୁଥାନ୍ତି ଲେଖାଲେଖିକୁ ଜାରି ରଖିବା ପାଇଁ। ଶ୍ରୀଗୁଣ୍ଡିଚା ପୂର୍ବଦିନ ମୋ' 'ବାଜେଝିଅ' ବହିକୁ ଧରି ଆମ ଘରେ ସେ ପହଞ୍ଚି କହିଲେ - ନେ ତୋ' ବହି। ମୋ ପ୍ରଥମ ବହିକୁ ଦେଖି ସେ ରାତି ଖୁସିରେ ମୋତେ ନିଦ ହୋଇନଥିଲା।

ତା'ପରଦିନ ସଞ୍ଜରେ ରଥରେ ମୋ ବହିକୁ ନେଇ ଛୁଆଁଇ କାଳିଆକୁ ମୁଣ୍ଡିଆ ମାରିବା ବେଳେ ମୋ ଆଖିରୁ ଦୁଇ ଧାର ଲୁହ ବହିଯାଇଥିଲା।

*ଚୂଡ଼ଙ୍ଗ ସାହି, ମାଟାଗୋସ୍ୱାମୀ ଲେନ୍ ପୁରୀ*







# କେଣେ ଉଭାନ ହେଲ !

ସୁବ୍ରତ କୁମାର ଦାସ

ଢୋଲ ଶବଦର ବିକଳ ବ୍ୟାପ୍ତିଠୁ
ଦୂରରେ ରହି
କେତେ ସରାଗରେ ମୂର୍ତ୍ତି ଗଢୁଥିଲ
କେଣେ ଉଭାନ ହେଲ !

ନିଛାଟିଆ ନୀରବତାରେ
ଚହକୁଥିବା ଗୋଟେ ଘା'ର ଡାକକୁ
ସଁ'ପି ଦେଇଥିଲ
ସୁନ୍ଦର ଶୃଙ୍ଖଳିତ ସ୍ୱପ୍ନବିଭାରେ
କିଛି ଖଇଫୁଟା ଅର୍ନ୍ତଦାହ
କିଛି ଖୁଟୁରା ହାହାକାର !

ଯାତ୍ରା ଆରମ୍ଭ ବେଳେ
ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାରରେ
ବସା ପାତୁଥିଲା ଭୋର ପକ୍ଷୀର ଗୀତ
ସେଇ ଗୀତରେ ଥିଲା
ଢେଉଢେଉକା ସୋରିଷ ଫୁଲରକ୍ଷେତ
ତିନ୍ତୁଥିଲା ଦେହ ମନ ।

ଯାତ୍ରା ଆରମ୍ଭ ବେଳେ
କେତେ ଦୃଶ୍ୟ ନଟୋଉ ଥିଲେ
କେତେ ଆଶା ଥଂଟଘଷୁଥିଲେ
ଥୁଣ୍ଟା ଡାଳରେ

କୁହୁଡ଼ି କାକରର ସ୍ପର୍ଶରେ
କଣ୍ଟା ରକ୍ତ ଓ ପାଦ ମିତ ବସିଥିଲେ
ଶୁଆପଖିଆ ଖଡ଼ି ଧରି
ଫଳା ମଡ଼ୋଉ ଥିଲା ଆଲୁଅ ।

ନିଜ ପାଦ ଚିହ୍ନର ସେଲଫି ନେଉ
ନେଉ
କେଣେ ଉଭାନ ହେଲ ?
ମନବୋଧ ଚଉତିଶାରେ
ଆଉଟି ହେଉଚି ସଂଜ
ସ୍ମୃତି ପଥର ।

କହୁଥିଲ ଦେହ ମାଟି
ମାଟିର ସଂସାର
ମାଟି ଗଢ଼ିଛନ୍ତି ଈଶ୍ୱର
ଲୁହ ମାଟି, ଲହୁ ମାଟି
ତୁମେ ମାଟିରେ ଗଢୁଥିଲ ଈଶ୍ୱର !!
ମୂର୍ତ୍ତି ଛାଏଁ ମୂର୍ତ୍ତି ଅଛି
କେଣେ ଉଭାନ ହେଲ ??





# ସ୍ମୃତିର ଅମାନିଆ ନଈ : ତପନ ଭାଇ

**ଚିତ୍ତରଞ୍ଜନ ନାୟକ**

ତପନ ପଟ୍ଟନାୟକ ଓରଫ ତପନ ଭାଇ ଗୋଟେ ନାଁ ନୁହେଁ , ଗୋଟେ ଅସମାହିତ ରହସ୍ୟର ଗୁମ୍ଫାରେ ସ୍ୱପ୍ନ ଖୋଜିଚାଲିଥିବା ବିରଳ ପ୍ରେମିକ । ଲାଗେ ସେ ଯେମିତି ଧାରେ ସୁସଂଯୋଜିତ ଆଉ ସୁନିୟନ୍ତ୍ରିତ ହସ ଫିଙ୍ଗିଦେଇ ପୃଥିବୀର ସବୁ ସମୟକୁ ନିଜ ଝୁଲାମୁଣିରେ ଭର୍ତ୍ତି କରିବାର ସାମର୍ଥ୍ୟ ରଖନ୍ତି । ପୁଣି ବି ଲାଗେ ସେ ଯେମିତି ତମାମ ଦୁଃଖର କିଆରିରେ ଅମଳ ହେଉଥିବା ଏକମାତ୍ର ହସର ଫସଲ । ସେ ହିଁ ସେମିତି । ଜୀବନସାରା ସେମିତି ବେଫିକର, ବେସାଲିସ ସମୟର ସୌଦାଗର । ମୋର ତାଙ୍କ ସହ ଯଦିଓ ଖୁବ ଅଳ୍ପ ସମୟ ପ୍ରତ୍ୟକ୍ଷ ଭେଟ ହେଇଛି , ହେଲେ ଦୀର୍ଘ ୧୫ ବର୍ଷ ଧରି ତାଙ୍କ ସହ ଭାବଗତ ସମ୍ପର୍କ ମୋତେ ଜୀବନକୁ ଭୋଗିବା ଓ ସହିବାର ବ୍ୟାକରଣ ଶିଖେଇଛି, ଏହା ନିଃସନ୍ଦେହ । ଅଗ୍ରଜ କବି ତଥା ପ୍ରିୟ ବଡ଼ଭାଇ କମଳ କୁମାର ମହାନ୍ତିଙ୍କ ନିଜ ନିଜ ଇନ୍ଦ୍ରପ୍ରସ୍ଥ କବିତା ସଙ୍କଳନ ସେ ତପନ ଭାଇଙ୍କ ସମନ୍ୱୟ ପ୍ରକାଶନୀରୁ ପ୍ରକାଶ କରିବା ସମୟରୁ ହିଁ କମଳ ଭାଇଙ୍କ ସୌଜନ୍ୟରୁ ମୋର ତାଙ୍କ ସହ ସମ୍ପର୍କର ଡୋରିଟିଏ ଲମ୍ବିଥିଲା । ମିଷ୍ଟଭାଷୀ ଓ ଆମାୟିକ ସ୍ୱଭାବର ଜଣେ ନିଆରା ବ୍ୟକ୍ତିତ୍ୱ ରୂପେ ସେ ଧୀରେଧୀରେ ମନରେ ବସିଥିଲେ । ତାଙ୍କର ଗୋଟିଏ କଥା ମତେ ବାରମ୍ବାର ରେଖାପାତ କରେ । ସେ କହୁଥିଲେ ଜୀବନ ଗୋଟେ ବିରଳ ନଈ । ଜୀବନ ନଈର ସୁଅକୁ ଡ୍ୟାମ ବନେଇ ରୋକିହୁଏନି । କେତେବେଳେ ସେ କୋଉଠି ସବୁକିଛି ଉଜୁଡାଏ ତ କେଉଁଠି ଶସ୍ୟଶ୍ୟାମଳା କରେ ସେକଥା ଜାଣିହୁଏନି ।  ଏଇ ରୋଗ ଆଉ କଣ କି ? ଏଇଟା ବି ଗୋଟେ ଯୁଦ୍ଧ, ଯାହା ଆମେ ଜିତୁ ବା ହାରୁ, ଏଇ ଦେହ ମନର ଦାୟରେ ହିଁ ଲଢ଼ିବାକୁ ହୁଏ । ସତରେ ତପନ ଭାଇ ହିଁ ସେମିତି ଥିଲେ । ଶେଷଯାଏ ତାଙ୍କ ଦୃଢ଼ ମନୋବଳ ଓ ଜୀବନ ପ୍ରତି ଗଭୀର ଅନୁରାଗ ତାଙ୍କୁ ରୋଗ ବିରୁଦ୍ଧରେ ଏକ ମାରାଥନ ଅଥଚ ପ୍ରଭାବୀ ପାଳି ଖେଳିବାରେ ସହାୟକ ହେଇଥିଲା । ଶେଷ ପର୍ଯ୍ୟନ୍ତ ସାହିତ୍ୟ ସାଧନା ଓ ପୁସ୍ତକ ପ୍ରକାଶନକୁ ନିଜର ଆତ୍ମା ବୋଲି ବିଚାରୁଥିବା ତପନ ଭାଇ ଦେହର ଯୁଦ୍ଧରେ ହାରିଯାଇପାରନ୍ତି ସତ, ହେଲେ ଆତ୍ମାର ଯୁଦ୍ଧରେ ସେ ଅପରାଜେୟ । ତାଙ୍କର ଅସଂଖ୍ୟ କବିତା ତାଙ୍କୁ ପ୍ରତିଟି ହୃଦୟରେ ଚିରସବୁଜ ନାୟକ କରି ବଞ୍ଚେଇରଖିବ ।





ତପନ ଭାଇ ! ଆପଣ ଯୋଉଠି ବି ଥାଆନ୍ତୁ ସର୍ଜନଶୀଳତାର ଏକ ଅନ୍ତର୍ମୁଖୀ ଆତ୍ମା ହେଇ ଥାଆନ୍ତୁ। ଆପଣଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ଏଇ ମୋର ଶେଷ ପଦଟିକୁ ହିଁ କେବଳ ଉତ୍ସର୍ଗ କରୁଛି।

ସ୍ମୃତି ମୋର !
ଆଜିର ଏ ଲୁହ ଯଦି ସତ ହେଇଥିବ
କେବେ ନା କେବେ ତ ପୁଣି ଦେଖାହେବ
ସମୟ ପଛକେ ଜଳୁ ସ୍ୱପ୍ନର ନିଆଁରେ
ତମେ କିନ୍ତୁ ଭଲରେ ହିଁ ଥାଅ
ସକାଳକୁ ଏଇ କଥା ରାତି କହୁଥିବ !
କିଏ ଜାଣେ ! ତପନ ଭାଇ ଏବେ କେମିତି ଥିବ ?
ଯେମିତି ବି ଥାଅ, ବୁନ୍ଦାଏ ଲୁହରେ
ବିଶ୍ୱାସର ଇନ୍ଦ୍ରଧନୁ ସେଠି ଆଙ୍କୁଥିବ ! 





# ବିଗଳିତ ହୃଦୟର ବିରଳ ଦରଦୀ ମଣିଷ

ସନ୍ନ୍ୟାସୀ ନାୟକ

ଜଣେ ବିଗଳିତ ହୃଦୟର ବିରଳ ଦରଦୀ ମଣିଷ କବି ଓ ଗୀତିକାର ତପନ ପଟ୍ଟନାୟକ । ମୋର ରକ୍ତର ସମ୍ପର୍କ ନଥିଲେ ବି ଭାଇ ସହ ଭାବର ସମ୍ପର୍କ ନିବିଡତା ଥିଲା । ତାଙ୍କୁ ହରାଇ, ମୋତେ ଲାଗୁଛି ମୋ ଅନ୍ତରଙ୍ଗ ମଣିଷଟିଙ୍କୁ ହରାଇଲି । ମୋ ପିଲାବେଳୁ, ତିନି ଦଶନ୍ଧିରୁ ତଦୁର୍ଦ୍ଧ୍ୱ ତାଙ୍କ କବିତା ବିଭିନ୍ନ ପତ୍ର ପତ୍ରିକା ରେ ପଢ଼ିଛି, ସେ ବାଣପୁର ଖୋରଧା ଅଂଚଳରେ ଖୁବ ଜଣା ଶୁଣା ବ୍ୟକ୍ତିତ୍ୱ । ମୁଁ କିଛି ସାହିତ୍ୟ ସଭାରେ ତପନ ଭାଇଙ୍କ ସହ ଅନ୍ତରଙ୍ଗ ହୋଇଥିଲି, ମାତ୍ର ଯେତେବେଳେ ପୁରୀ ଆସିଲି ତାଙ୍କ ସହ ନିବିଡ଼ ହେବା, ମୋ ଭାଗ୍ୟରେ ଜୁଟିଲା । ବଡଦାଣ୍ଡ ବଡଶଙ୍ଖ ନାରାୟଣୀ ଚାହା ଦୋକାନରେ ତପନ ଭାଇଙ୍କ ସହ ମୋର ସପ୍ତାହକୁ ଦୁଇ ତିନି ଥର ଦେଖା ହୁଏ ।

କବିତା ଚର୍ଚ୍ଚା କଲାବେଳେ ଓଡ଼ିଆ ସାହିତ୍ୟରେ ଅପତ୍ୟ ପିଢ଼ି ସୃଷ୍ଟି ପାଇଁ ସଦାସର୍ବଦା ଚିନ୍ତିତ ଥାନ୍ତି । ତାଙ୍କ କବିତା ଆଉ ଗୀତରେ ମାନବବାଦ ଓ ଭକ୍ତିଭାବ ସୁସ୍ପଷ୍ଟ । ମୁଁ ବଡ଼ଦାଣ୍ଡରେ ପତିତ ପାବନବାନା କୁ ଦେଖେ ତପନ ଭାଇଙ୍କ ଅବବୋଧ ଆଖିକୁ ଦେଖେ । ସ୍ୱତଃପ୍ରତଃ ପଳିଆସେ ଭଜନ.. ମୁଁ ଆସିଛି ଦେଖି ମୋ କଳା ବଦନକୁ । ସେ ଆଖି ବୁଜି ଜଗନ୍ନାଥ ଦର୍ଶନ କରନ୍ତି । ଯେଉଁ ପର୍ଯ୍ୟନ୍ତ ଜଗନ୍ନାଥ ତାଙ୍କ ମନରେ ଉଦଭାଷିତ ନହୁଅନ୍ତି । ଥରେ ସିଏ କହିଲେ : ମଣିଷ ବଞ୍ଚିଥିବା ଯାଏ ଏ ପୃଥିବୀ ସୁନ୍ଦର । ମରିଗଲେ ଏ ପୃଥିବୀ ତା ପାଇଁ ସରିଗଲା ବାସ୍ତବିକ, ତାଙ୍କ ପାଖରେ ବସିଲେ ମଣିଷ ନିଶ୍ଚିତ ସନ୍ନ୍ୟାସୀ ହୋଇଯିବ ଏହା ନିଃସନ୍ଦେହ ।

ମୁଁ ରାସ୍ତା ସାରା ଭାବିଲି, ରାତି ଶୋଇଲିନି, ସେହି ଭଳି ମହାନ ଦର୍ଶନର ମଣିଷ ପାଇଁ । ବାସ୍ତବିକ ତାଙ୍କ ରୋଗ ସହ, ସେ କେବେ ସାଲିସ କରି ନାହାନ୍ତି । ମନବଳ ହିଁ ଶାରୀରିକ ବଳର ଆଉ ଏକ ବଳ ବୋଲି କହୁଥିବା ଦର୍ଶୀ ମଣିଷ ଆମ ଗହଣରୁ ଚାଲିଗଲେ । ଏ ମଣିଷ ଜଗନ୍ନାଥ ଙ୍କୁ ଦର୍ଶନ କଲାବେଳେ , ସବୁ ବେଳେ ମନେ ପଡିବ ତପନ ପଟ୍ଟନାୟକଙ୍କ କାଳଯୟୀ ଗୀତ ।

ମୁଁ ଆସିଛି ଦେଖି ମୋ କଳା ବଦନକୁ ...

*ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ, ଚକ୍ଷୁ ବିଭାଗ, ପୁରୀ*
*୯୪୩୭୩୫୨୫୬୦*



# ତପନ ଭାଇ ଓ ମୁଁ

ଲକ୍ଷ୍ମୀକାନ୍ତ ଦଳେଇ

ଏକ ଅଳସ ଅପରାହ୍ଣରେ କବି ବନ୍ଧୁ ସନ୍ତୋଷ ସାହୁଙ୍କ ସହ ତପନ ଭାଇ ଆସି ଆମ ଘରେ ପହଂଚିଲେ।ତପନ ଭାଇଙ୍କ ସହ ମୁଁ ଆଗରୁ ମିଶିନଥିଲି।ଯଦିଓ ସେ ପୁରୀରେ ରହୁଥିଲେ।ଯଦିଓ ପୂର୍ବରୁ ତାଙ୍କର ଅନେକ କବିତା ମୁଁ ପଢ଼ିସାରିଥିଲି।ଯଦିଓ 'ମୁଁ ଅସିଚି ଦେଖି ମୋ କଳାବଦନଙ୍କୁ' ଭଳି କାଳଜୟୀ ଭଜନ ସହିତ ତାଙ୍କର ଅନେକ ଗୀତ ମୁଁ ଶୁଣିସାରିଥିଲି।ତାଙ୍କର ମୁଁ ଜଣେ ମୁଗ୍ଧ ପ୍ରଶଂସକ ଥିଲି।ତାଙ୍କ ପ୍ରତି ମୋର ଗଭୀର ସମ୍ମାନବୋଧ ଥିଲା।କିନ୍ତୁ ସେଇ ପ୍ରଥମ ଦେଖାରେ ମୋତେ ଲାଗିଲା, ତାଙ୍କ ସହ ମୋର ସମ୍ପର୍କ ବର୍ଷ ବର୍ଷର।ଏତେ ବଡ ଲେଖକ ଅଥଚ ଏତେ ସ୍ନେହୀ, ମିଷ୍ଟଭାଷୀ, ମୁଁ ଆଶ୍ଚର୍ଯ୍ୟ ଚକିତ ହେଲି।କହିଲେ,'ଆରେ ଲକ୍ଷ୍ମୀକାନ୍ତ, ତୁ ବହି କଲୁଣି ?' 'ମୁଁ ନାହିଁ କଲି। ସେ କହିଲେ,'ମୁଁ ତୋର ବହି କରିବି।' କଲେ ବି। ଦୁଇ ଦୁଇଟି ବହି।ମୋର ଆହୁରି ବହି ଛପିବା ପାଇଁ ସେ ବାରମ୍ବାର କହୁଥିଲେ ବି ତାହା ଶେଷ ପର୍ଯ୍ୟନ୍ତ ସମ୍ଭବ ହୋଇପାରିଲା ନାହିଁ ମୋର ଇଚ୍ଛାଶକ୍ତିର ଅଭାବ ଯୋଗୁଁ। ସେବେଠୁ ତପନ ଭାଇଙ୍କ ସହ ମୁଁ ବିତେଇଛି ଅସରନ୍ତି ଅନ୍ତରଙ୍ଗ ମୁହୂର୍ତ୍ତ।ପୁରୀର ବଡ଼ଶଙ୍ଖ, ଭୁବନେଶ୍ୱର ର ପୁରୁଣା ବସ୍‌ଷ୍ଟାଣ୍ଡ, କଟକର ଗିରିଜା ଭାଇଙ୍କ ପ୍ରେସ୍। ବିଳମ୍ବିତ ରାତିରେ ମୋ ମଟରସାଇକେଲ୍‌ରେ ଆମେ ଦୁହେଁ ପୁରୀକୁ ଫେରିଚୁ କଟକରୁ,ଭୁବନେଶ୍ୱରରୁ।

ଖାଲି ମୁଁ କାହିଁକି, ମୋ ପରି ଅନେକଙ୍କୁ ଅତ୍ମୀୟତାରେ ଅନୁଗୃହୀତ କରିଛନ୍ତି ତପନ ଭାଇ। ସେ ଖୁବ୍ ଶାନ୍ତ, ଛଳଛଳ ବି। ଖୁବ୍ ଗମ୍ଭୀର, ଉଦାର ବି। ତାଙ୍କ ଜୀବନ କାବ୍ୟିକ, କରୁଣ ବି। ସେ ଜଣେ ମଣିଷ ଅନେକ ମଣିଷଙ୍କୁ ଯେତିକି ଭଲପାଇବା ଦେଇଛନ୍ତି, ଅନେକ ମଣିଷଙ୍କଠାରୁ ସେ ସେତିକି ଭଲପାଇବା ପାଇପାରିନାହାନ୍ତି। ଓଡ଼ିଆ ଭାଷା ସାହିତ୍ୟକୁ ତାଙ୍କର ଅବଦାନ ତୁଳନାରେ ତାଙ୍କୁ ଉପଯୁକ୍ତ ସମ୍ମାନ ଓ ସ୍ୱୀକୃତି ମିଳିନାହିଁ।ତେବେ, ତପନଭାଇ ମୋ ଛାତି ଭିତରେ, ମୋ ବହି ଥାକରେ ରହିଛନ୍ତି;ରହିବେ ବି ସବୁଦିନ।

*ବାଲିଘାଟ, ପୁରୀ-୨*





# ଅମୃତର ସନ୍ତାନ:ତପନ ଭାଇ

ଶ୍ୟାମ ପ୍ରକାଶ ସେନାପତି

ଗୋଟିଏ ମଣିଷ କିନ୍ତୁ କୋଟିଏ ଅନୁଭୂତିର ଆଧାର । ସେ ଥିଲେ ଅନୁଭବରେ ପରିପୂର୍ଣ୍ଣ ବ୍ୟକ୍ତିତ୍ୱର ଅଧିକାରୀ ଓ ଦେଖିଦେଲେ ଆପଣା ଛାଏଁ ଭକ୍ତି ମାଡ଼ିଆସେ । ଖୁବ୍ ପରିଚିତ ନାଁ । ପରିବାର ରୁ ସମାଜ ଯାଏଁ ପରିବ୍ୟାପ୍ତ ନୀରବ କର୍ମମୟ ଜୀବନ । ଯେତେବେଳ ଦେଖିବ ସେ ମୁହଁଟିରେ ଅମୃତଭରା ହସଟିଏ ଭରି ହୋଇଥିବ । ସମସ୍ତଙ୍କ ସହିତ ମିଶି ସମସ୍ତଙ୍କୁ ଆପଣେଇ ନେବା କଳା ତାଙ୍କୁ ବେଶ୍ ଭଲ ଭାବରେ ଜଣାଥିଲା । ସ୍ପଷ୍ଟବାଦିତା , ନିର୍ଭୀକତା ଓ ଦୃଢମନା ପାଇଁ ସେ ଯେତିକି ପ୍ରସିଦ୍ଧ ଜଣେ ଦରଦୀ, ସ୍ନେହୀ,ନିଃସ୍ୱାର୍ଥପର ତଥା ନିଆରା ମଣିଷ ଭାବେ ସେତିକି ଲୋକପ୍ରିୟ ଥିଲେ। ତାଙ୍କର କଥା କହିବାର ଶୈଳୀ । ନିର୍ଭୀକ ଗୁଣରାଜି ମୋତେ ତାଙ୍କ ସହିତ ନିବିଡ଼ ବନ୍ଧନରେ ବାନ୍ଧିଥିଲା। ସେ ମୋ 'ଅଭିନନ୍ଦନିକା' ଅନୁଷ୍ଠାନରୁ ଗୀତି କବିତା ପାଇଁ 'ଅଭିନନ୍ଦନିକା ସମ୍ମାନ' ଲାଭ କରିବା ସହ ମୋର ଦୁଇଟି କବିତା ସଂକଳନ 'ମାଆ' ଏବଂ 'ବହୁବର୍ଣ୍ଣ' ର ପ୍ରକାଶକ ମଧ୍ୟ ଥିଲେ ।

ତାଙ୍କ ରଚିତ କବିତା, ଗୀତି କବିତା ଓ ଉପନ୍ୟାସ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ। କବି ତାଙ୍କର ପୁରୀ ରହଣି କାଳରେ ଶ୍ରୀକ୍ଷେତ୍ରର ସବୁ ସାହିତ୍ୟିକ, କଳାକାର ଓ ବୁଦ୍ଧିଜୀବୀମାନଙ୍କର ଆଦରର ପାତ୍ର ହୋଇପାରିଥିଲେ। ଜଣେ ବନ୍ଧୁବତ୍ସଳ ଓ ମିଷ୍ଟଭାଷୀ ସାରସ୍ୱତ ପୁରୁଷଙ୍କୁ ଓଡ଼ିଆ ସାହିତ୍ୟ ହରାଇଦେଲା ଯିଏ ଅମୃତର ସନ୍ତାନ, ତାଙ୍କୁ କଣ ମୃତ୍ୟୁ ସ୍ପର୍ଶ କରିପାରେ ? ଆଜି ତାଙ୍କର ତିରୋଧାନ ଫଳରେ ପରିବାର, ବନ୍ଧୁବାନ୍ଧବ ଓ ପରିଜନଙ୍କ ମଧ୍ୟରେ ଏକ ବିରାଟ ଶୂନ୍ୟସ୍ଥାନ ସୃଷ୍ଟି କରିଛି। ଏହି ଅବସରରେ ସେହି ମୋକ୍ଷପ୍ରାପ୍ତ ଆତ୍ମା ପ୍ରତି ମୋର ବିନମ୍ର ଭାବପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

*ପ୍ରତିଷ୍ଠାତା ସମ୍ପାଦକ - 'ଅଭିନନ୍ଦନିକା'*
*ସେନାପତି ଭବନ, ପୁରୀ*









# ଅସ୍ତଗଲେ ତରୁଣ ତପନ

**କାମଦେବ ମହାରଣା**

ଅସ୍ତଗଲେ ତରୁଣ ତପନ ।ଦିଗବଳୟରେ ଲିଭିଗଲା ଆୟୁଷର ଅନନ୍ତ ଦ୍ୟୁତି ।ସବୁକିଛି ସ୍ମୃତି ହୋଇଗଲା ।

କବି ତପନ ପଟ୍ଟନାୟକଙ୍କୁ ମୁଁ ଜାଣେ ଅନେକ ବର୍ଷ ତଳୁ ।ପୁରୀ ପୁସ୍ତକ ମେଳାର କୌଣସି ଏକ ସନ୍ଧ୍ୟାରେ ମତେ କେହିଜଣେ ଚିହ୍ନେଇ ଦେଇଥିଲା ତାଙ୍କୁ ।ପ୍ରଥମ ଦେଖାରେ ତାଙ୍କ ମୁହଁରେ ଥିଲା ଉଦିତ ତପନର ମନଲୋଭା ହସ ।ସେ ହସ ବୋଧହୁଏ ଥିଲା ଦୁଇଟି ମନ ଭିତରେ ସମ୍ପର୍କ ଯୋଡ଼ିବାର ଏକ କୋମଳ ସେତୁବନ୍ଧ ।

ମୁଁ ନୂଆନୂଆ ପୁରୀ ଆସିଥାଏ । ମଣିଷ ଚିହ୍ନୁ ଥାଏ ।ସବୁ କବିଙ୍କ ଭିତରେ ନିଜକୁ ଖୋଜୁଥାଏ ।ତପନ ଭାଇ ଥିଲେ ସେ ମଣିଷ ମାନଙ୍କ ଭିତରେ ଜଣେ ନିଆରା ମାନବ ସତ୍ତା ।

ପୁରୀ ବଡ଼ଦାଣ୍ଡରେ ବଡ଼ଶଙ୍ଖ ପରିବା ମାର୍କେଟ ଭିତରେ ସନ୍ତୋଷ ଭାଇଙ୍କ ଚା ଦୋକାନ ଥିଲା ତପନ ଭାଇଙ୍କ ସକାଳ ଆଉ ସନ୍ଧ୍ୟାର ଠିକଣା ।ସେଠି ଆସି ପହଞ୍ଚୁଥିଲେ ପୁରୀର ଅନେକ କବି । ଚା ସହିତ କବିତା ପଢା ମଣିଷ ଚର୍ଚ୍ଚା ସହିତ ନୂଆ ଭାବ ଆଉ ଭାଷାର ସନ୍ଧାନ ହେଉଥିଲା ।ଚା ପଇସା ସବୁବେଳେ ତପନ ଭାଇ ଦେଉଥିଲେ ।ଆଉ କେହିଦେଲେ ମନ ଦୁଃଖ କରୁଥିଲେ ।

ସେଇ ଚା ଖଟିରୁ ହିଁ ମୋ ଦ୍ୱିତୀୟ କବିତା ବହି 'ଛାଇସହ ସବୁଦିନ'ର ଭ୍ରୁଣ ସଂଚାର ହେଲା ।ନିଜେ ଛପିବା ପାଇଁ ତପନ ଭାଇ ଦାୟିତ୍ୱ ନେଲେ ।

ଏହି ସମୟରେ ମୁଁ ତାଙ୍କୁ ଖୁବ୍ ନିକଟରୁ ଦେଖିଥିଲି ।ତାଙ୍କ କବି ଜୀବନର ଟିକିନିଖି କଥା ମତେ ସେ କହୁଥିଲେ ।ସ୍ମୃତି ଆଉ ରୋମାଞ୍ଚର ସେ ସବୁ କଥା ମତେ ଅନେକ ପ୍ରେରଣା ଦେଉଛି ।

ତାଙ୍କର ବ୍ୟକ୍ତିଗତ ଅନେକ ସମସ୍ୟା ଥିଲା ।ଅନେକ ସଂଘର୍ଷ ଥିଲା ।କିନ୍ତୁ ସେ ସବୁବେଳେ ହସୁଥିଲେ । ଅଳ୍ପଭାଷୀ ଏଇ ଅଦ୍ଭୁତ ମଣିଷ ଜଣକ କେବଳ ହସ ବାଣ୍ଟିବା ଜାଣିଥିଲେ ।



ବ୍ୟକ୍ତିଗତ ସମସ୍ୟା ପାଇଁ ସେ ପୁରୀ ଛାଡ଼ି ଭୁବନେଶ୍ୱର ଗଲେ । ଗଲାଦିନ ଘରକୁ ଡାକି ଅନେକ ବହି ଦେଇଥିଲେ ।କହିଥିଲେ ଭୁବନେଶ୍ୱର ଯିବାକୁ । ମୁଁ ଯାଇ ପାରିଲି ନାହିଁ ।

ବର୍ଷକ ତଳେ ଫୋନ୍ କରିଥିଲି । ରୋଗତାଙ୍କୁ ପୂରାପୂରି କବଳିତ କରିସାରିଥିଲେ ହେଁ ତାଙ୍କ କଥାବାର୍ତ୍ତା ସାମାନ୍ୟ ଥିଲା ।

ତରୁଣ ତପନ ଅସ୍ତ ହୋଇଗଲେ । ହେଲେ ଆଲୋକର କ'ଣ ମୃତ୍ୟୁଥାଏ !

*ଯାନ୍ତ୍ରିକ ବିଭାଗ, ପୂର୍ବତଟ ରେଳପଥ*

*- ପୁରୀ ୨ , ମୋ : ୯୬୫୮୦୨୬୬୧୨*











# କବିତାର ପଂକ୍ତି ଭିତରେ ତପନ

## ସୁଦାମ ଚରଣ ରାଉତ

ତପନ ମୋର ପ୍ରିୟ ସାଙ୍ଗ ଥିଲା । ବାଲୁଗାଁ ହାଇସ୍କୁଲର ସହପାଠୀ । ଟିଭିରୁ ହଠାତ୍ ତପନର ମୃତ୍ୟୁ ଖବର ଶୁଣି ମୁଁ ନିର୍ବାକ୍ ହୋଇଗଲି । ତା'ପରେ ଭାବିଲି ନିଜ କଥା । କୋଉ ଦିନ ମୋତେ ବି ଡାକରା ଆସିଯିବ । ଆମେ ଯୋଉ ବୟସରେ ପହଞ୍ଚିଛୁ, କୋଉ ମୁହୂର୍ତ୍ତରେ ଆଖି ବୁଜି ହୋଇଯିବ । ଏହା ହିଁ ଜୀବନର ପରମ ଓ ଚରମ ସତ୍ୟ ।

ମୁଁ ବାଲୁଗାଁ ହାଇସ୍କୁଲରେ ପଢୁଥିଲାବେଳେ ଅନ୍ୟ ସାଙ୍ଗମାନଙ୍କ ଅପେକ୍ଷା ତପନ ମୋର ଅଧିକ ଘନିଷ୍ଠ ଥିଲା । ସାଙ୍ଗ ହୋଇ ବୁଲିବା, ଖେଳିବା ଓ ବଳିଆ କ୍ୟାଣ୍ଟିନ୍‌କୁ ଯାଇ ଜଳଖିଆ ଖାଇବା ଆଦି କଥା ମୋର ଏବେ ବି ମନେପଡୁଛି । ଗଣେଶ ପୂଜା ଓ ସରସ୍ୱତୀ ପୂଜାରେ ନୂଆ ଡ୍ରେସ୍ ପିନ୍ଧି ଆନନ୍ଦରେ ବୁଲିବା ଓ ଭୋଜି ଖାଇ ଏକାଠି ଘରକୁ ଫେରିବା କଥା ମନେ ପଡ଼ିଲେ ମୋ ଦେହ ଶିହରି ଉଠୁଛି ।

ପାଠପଢ଼ା ବ୍ୟତୀତ ତପନ ପାଖରେ ଆଉ ଗୋଟେ ଭଲ ଗୁଣ ଥିଲା । ତାହା ହେଲା ଗୀତ ଲେଖିବା । ଏହି ଅଭ୍ୟାସଟି ପରବର୍ତ୍ତୀ ସମୟରେ ତାକୁ ଏକ ଗୀତିକାରର ପରିଚିତି ଦେଇଥିଲା । କଟକ ରେଡ଼ିଓ ସେଣ୍ଟରର ଏକ ସ୍ୱୀକୃତିପ୍ରାପ୍ତ ଗୀତିକାର ସେ । ତା'ର କେତୋଟି ଭଜନ ଓଡ଼ିଶାର ପୁରପଲ୍ଲୀରେ ବେଶ୍ ଲୋକପ୍ରିୟ ହୋଇଥିଲା । ତା'ର ଏହି ସଫଳତାରେ ଆମେ ସାଙ୍ଗମାନେ ଗର୍ବିତ ହେଉଥିଲୁ । ଅସଂଖ୍ୟ କବିତା ରଚନା କରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ତା'ର କେତୋଟି କବିତା ବହି ଏଯାବତ୍ ମୋ ପାଖରେ ଅଛି । କେବେ ଅବସର ମିଳିଲେ ମୁଁ ସେଗୁଡ଼ିକୁ ପଢ଼େ ଓ କବିତାର ପଂକ୍ତି ଭିତରେ ତାକୁ ଦେଖେ ।

ଗୋଟେ ଭଲ ସାଙ୍ଗ ଚାଲିଗଲା ପରେ ଯେଉଁ କଷ୍ଟ ହୁଏ, ତାକୁ ଆଜି ମୁଁ ଅନୁଭବ କରୁଛି । ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛିସ ଯେ ତା' ଆତ୍ମାର ସଦ୍‌ଗତି ହେଉ ଓ ତା' ପରିବାର କୁଶଳରେ ଅବଶିଷ୍ଟ ଜୀବନ କାଟନ୍ତୁ ।

*ବାଲୁଗାଁ, ଖୋରଧା*



# ଶ୍ରଦ୍ଧାଞ୍ଜଳି

ଯୋଗେନ୍ଦ୍ର କୁମାର ନାୟକ

ତିମିର ହଟାଇ ଆସିଥିଲ ତୁମେ
ତପନ ଶିଖାରେ ଭରି
ତପନ ଭାଇ ମୋ ସକାଳ ଓଠରେ
ସୁନେଲି ସୂରୁଯ ପରି ।
ଆସିଥିଲ କେଉଁ ସ୍ନିଗ୍ଧ ଲଗନେ
ମୁଗ୍ଧ ମଶାଲ ଧରି
ହେ ତପନ ଥିଲ ଭାଷାର ସୂର୍ଯ୍ୟ
ଆଶାର ଆଲୋକ ଝରି ।
ତୁମେ ଦେଖିଥିଲ କଳାବଦନକୁ
ଅନ୍ଧ ଲଉଡ଼ି କରି
ଭକତ ହୃଦୟେ ଶ୍ରୀଜଗନ୍ନାଥଙ୍କୁ
କରିଲ ଗଳାର ମାଳି ।
ଦୁଃଖ କଷ୍ଟର ଦୁର୍ଭାଗ୍ୟ ଦିନେ
ସହିଲ କଷଣ ଭାରି
ଶେଷ ପାହାନ୍ତିର ମଉଳା ଫୁଲ ହେ
ସଅଳ ପଡ଼ିଲ ଝରି ।
ଯୋଉଠି ରହିଛ ଭଲରେ ଥାଅ ହେ
ଏତିକି ପ୍ରଭୁଙ୍କୁ ଅଳି
ଅଶ୍ରୁ ନୟନେ ଯୋଗେନ୍ଦ୍ର ଜଣାଏ
ଭକ୍ତିର ଶ୍ରଦ୍ଧାଞ୍ଜଳି ।

ମୋ : ୯୪୩୭୩୦୧୫୨୭



# ପ୍ରଣାମ

ଦେବାଶିଷ ମହାପାତ୍ର

ସାତ ସାଗରଠୁ ଡେର ନଈ ଡେଇଁ
ଲମ୍ବିଥିଲା ତୁମ ସପନ !
କବିତା ଗୀତରେ, କଥାରେ ସତରେ
ସବୁଥିରେ ଥିଲ ତପନ ।
ହଠାତ୍ ଯାଇଛ ଚାଲି
ଲାଗୁଛି ଏମିତି, ସତେକି ଯେମିତି
ଏଇ ଦେଖାହେବ କାଲି !

ଭଜନ ଜଣାଣ ଲେଖି କେତେ କ'ଣ
ସଭିଙ୍କର ଥିଲ ପ୍ରିୟ !
ହାବରେ ଭାବରେ, ମଣିଷ ଭାବରେ
କରିଲ ହୃଦୟ ଜୟ !
କେବେ ହେବ କୁହ ଦେଖା ?
ପ୍ରଶ୍ନର ଉତ୍ତର, ନ ଜାଣେ ମାତର
ତୁମେ ଥିବ ପ୍ରିୟସଖା ।

ମୋ:୬୩୭୨୦୮୨୬୯୦









# ତରତର ଲେଉଟାଣି

## ଡ. ପ୍ରସନ୍ନ କୁମାର ମହାଂତି

ଆଜିଠୁ ୪୦ ବର୍ଷରୁ ବେଶି ଦିନ ତଳେ କବି ତପନ ପଟ୍ଟନାୟକଂକ ସହ ମୋର ପ୍ରଥମ ଦେଖା ହୋଇଥିଲା।'ତପନ ପଟ୍ଟନାୟକ'ରୁ 'ତପନ ଭାଇ' ହେବାଲାଗି ସେ ଗୋଟିଏ ଦିନ ସୁଦ୍ଧା ଲୋଡ଼ି ନ ଥିଲେ। ସେଇ ପ୍ରଥମ ଦେଖାରେ ହିଁ ପରସ୍ପର ହୃଦୟକୁ ଆମେ ଉଣ୍ଡି ଦେଖି ନେଇଥିଲୁ ଓ ଦୁହେଁ ବଡ଼ ଭାଇ : ସାନ ଭାଇ ହୋଇଯିବାକୁ ମନେମନେ ରାଜି ହୋଇଯାଇଥିଲୁ।

ଅନୁଜପ୍ରତିମ କବି ଅଜିତ ଦାଶମହାପାତ୍ର ହିଁ ତପନ ଭାଇଂକ ସହ ବଂଧୁତା ସ୍ଥାପନରେ ଥିଲେ ସୂତ୍ରଧର। ଅଜିତଂକ କାର୍‌ରେ ବାଲୁଗାଁ ଯାଇ ମରାଳମାଳିନୀ ରୂପସୀ ଚିଲିକା ତୀରର ଅଦୂରସ୍ଥ ତପନ ଭାଇଂକ ଘରେ ପ୍ରଥମ ଥର ଯେତେବେଳେ ମୁଁ ପହଂଚିଲି, ତାଂକ ଆଂତରିକତା ଏଭଳି ଅଂତରଂଗ ଓ ନିଷ୍କପଟ ଥିଲା ଯେ ମନେହୋଇଥିଲା ଯାଂକ ସହ ଯେମିତି ଆଗରୁ ନିବିଡ଼ ବଂଧୁତା ହୋଇସାରିଛି ! ସେଇ 'ଆଗରୁ'ଟା କ'ଣ ଅନ୍ୟ କୋଉ ଜନ୍ମର କଥା !

ଅନେକ ଆତ୍ମୀୟତାପୂର୍ଣ ମୁହୂର୍ତ୍ତ ତାଂକ ସହ ଅତିବାହିତ ହୋଇଛି। ଭୁବନେଶ୍ୱରରେ, ବାଲୁଗାଁରେ,କଟକ ବିଷୁବ ମିଳନରେ, ବିଭିନ୍ନ ସହରର ପୁସ୍ତକ ମେଳାରେ। ତପନ ଭାଇଂକ ବ୍ୟକ୍ତିତ୍ୱର ସବୁଠୁ ଚୁଂବକୀୟ ଗୁଣଟି ଥିଲା ତାଂକ ନିଷ୍କପଟ,ନିରହଂକାର,ନିଃସ୍ୱାର୍ଥପର ଲୋଡ଼ିବାପଣ। ଏକ ଶିତଳ ପୁଷ୍କରିଣୀ ପରି ଶାଂତ ଓ କୋମଳ ତାଂକର ଅସ୍ତିତ୍ୱ; ସାମ୍ନାରେଥିବା ଲୋକଟିକୁ କେବଳ ତାଂକ ଆଡ଼କୁ ଆକର୍ଷି ଆଣୁ ନ ଥିଲା, ବରଂ ତାଂକୁ ଭଲ ପାଇବାକୁ ବାଧ୍ୟ କରୁଥିଲା।

ବାଲୁଗାଁ ଓ ବାଣପୁରର ଆଖପାଖ ଏକ ବେଶ୍ ବଡ଼ ପରିଧିର ଅଂଚଳ ସତେ ଯେମିତି ଥିଲା ତାଂକ ନିଜ ସାମ୍ରାଜ୍ୟ ! ସେ ଅଂଚଳର ପ୍ରାୟ ସବୁ କବି,ଲେଖକ,କଳାକାର, ବୁଦ୍ଧିଜୀବୀ ଓ ଭିନ୍ନ ଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ବ୍ୟକ୍ତିଂକସହ ତାଂକର ପରିଚୟ ବା ବଂଧୁତା ଥିଲା।

ଥରେ ଅଜିତଂକ କାର୍‌ରେ ଆମେଦୁହେଁ ବାଲୁଗାଁ ତପନ ଭାଇଂକ ଘରକୁ ଯାଇଥାଉ। ତା'ପରେ ସେଠୁ ତିନିଜଣ ବୁଲିବାକୁ ବାହାରିଲୁ। ଆଉ ତପନ ଭାଇ



ହେଲେ, ସ୍ୱାଭାବିକ ଭାବେ, ଆମ ଗାଇଡ୍। ବରକୂଳ ଚିଲିକା କୂଳରେ ବୁଲାବୁଲି କରି, ବାଣପୁର ମାଆ ଭଗବତୀଂକୁ ଦର୍ଶନ କରି ଖଲ୍ଲିକୋଟ୍ ଗଲୁ। ସେଠି ଜଗନ୍ନାଥ ମଂଦିର ଦର୍ଶନ ସାରି ଖଲ୍ଲିକୋଟ୍ କଳା ମହାବିଦ୍ୟାଳୟ ଗଲୁ। କଲେଜ୍‌ର କେତେଜଣ ଅଧ୍ୟାପକ ଥିଲେ ତପନ ଭାଇଂକ ବଂଧୁ। କଲେଜ୍ ଛାତ୍ର ଉପରୁ ବଣ ପାହାଡ଼ ଘେରା ଆଖପାଖର ଦୃଶ୍ୟମାନ ସବୁଜ ପରିଧିଟି ଥିଲା ପ୍ରକୃତରେ ମନୋମୁଗ୍ଧକର ଓ କବିତାମୟ।

କାହିଁକି ଏତେ ତରତର ହୋଇ ସେ ଲେଉଟିଗଲେ? ପୁରୀରେ ଥିଲାବେଳେ ସେ ମାସ ଓ ବର୍ଷ ସାରା ଜଗନ୍ନାଥଙ୍କୁ ଦର୍ଶନ କରୁଥିଲେ। ଆଉ ଦର୍ଶନ କଲାବେଳେ ତାଂକର ପ୍ରସିଦ୍ଧ ଜଣାଣ 'ମୁଁ ଆସିଛି ଦେଖି ମୋ କଳା ବଦନକୁ' ଗୀତଟିକୁ ଅଶ୍ରୁଳ ନୟନରେ ସେ ମନେମନେ ଗୁଣୁଗୁଣାଉଥିଲେ। ପ୍ରଭୁଂକ କମନୀୟ ଦାରୁ ମୂର୍ତ୍ତି ଦର୍ଶନରେ ତାଂକ ଭକ୍ତ ଆତ୍ମା ବୋଧେ ପରିତୃପ୍ତ ହେଉ ନ ଥିଲା। ସତ କଳା ବଦନଂକୁ ଦର୍ଶନ କରିବାକୁ ସେ ତରତର ହୋଇ ସିନା ଲେଉଟିଗଲେ!!

*୩- ମହାଲକ୍ଷ୍ମୀ ନଗର, ଗଡ଼ମହାବୀର ରୋଡ୍*
*ଗ୍ୟାରେଜ୍ ଛକ, ଭୁବନେଶ୍ୱର - ୨*









# ଆମ ସଂପର୍କର କିଛି ନାଁ ନ ଥିଲା

**ଅଜିତ ଦାଶ ମହାପାତ୍ର**

୧୯୬୯ ମସିହାର କଥା । ମୁଁ ଷଷ୍ଠ ଶ୍ରେଣୀରେ ପଢୁଥାଏ, ବାଲେଶ୍ୱର ଜିଲ୍ଲା ସ୍କୁଲରେ । ସେତେବେଳେ ଦୈନିକ ଖବରକାଗଜ 'ମାତୃଭୂମି'ରେ 'କିଶୋର ଫଉଜ' ବାହାରୁଥିଲା, ସେଥିରେ ପିଲାମାନଙ୍କ ଲେଖା ବାହାରୁଥିଲା । ସେଥିପାଇଁ 'କିଶୋର ଫଉଜ'ର ସାଥୀ ହେବାକୁ ପଡୁଥିଲା । ଯୋଉମାନେ ସାଥୀ ହେଉଥିଲେ, ସେମାନଙ୍କ ନାମ ଓ ଠିକଣା ସେଥିରେ ପ୍ରକାଶିତ ହେଉଥିଲା । ମୁଁ 'କିଶୋର ଫଉଜ'ର ସାଥୀ ହେବାର କିଛି ଦିନ ପରେ ଗୋଟିଏ ପୋଷ୍ଟକାର୍ଡ ଆସି ମୋ ପାଖରେ ପହଂଚିଲା, ବାଲୁଗାଁ'ରୁ । ଯିଏ ପଠେଇଥିଲେ, ସେ ହେଉଛନ୍ତି ତପନ ପଟ୍ଟନାୟକ । ସେଇଠୁ ଆରମ୍ଭ ହେଲା ସଂପର୍କ – ଯାହା ଆଜିଯାଏ ଅତୁଟ ରହିଥିଲା ।

୧୯୭୧ ମସିହାରେ, ମୋର ବାପା ଶ୍ରୀ ଯଦୁନାଥ ଦାଶ ମହାପାତ୍ର, ଓଡିଶା ସରକାରରେ ମନ୍ତ୍ରୀ ଥିଲେ । ଆମେ ଯାଇଥିଲୁ ବୁଲିବାକୁ ଚିଲିକା । କାଳିଜାଇ ବି ଯାଇଥିଲୁ । କାଳିଜାଇରୁ ଆମେ ଫେରିଲା ପରେ, ଚିଲିକା କୂଳରେ ଠିଆ ହୋଇଥିଲେ ତପନ ଭାଇ । ସେ କେମିତି ଖବର ପାଇଯାଇଥିଲେ, ବାପା ଆସିଛନ୍ତି ବୋଲି । ସେଇଠି ପ୍ରଥମ ଥର ପାଇଁ ତପନ ଭାଇଙ୍କୁ ମୁଁ ଦେଖିଲି । ବାସ୍ ! ମନ୍ତ୍ର-ମୁଗ୍ଧ ହୋଇଯାଇଥିଲି, ନବମ ଶ୍ରେଣୀରେ ପଢୁଥିବା ଏକ ବାଳକ ।

ତପନ ଭାଇ ମୋ' ଠୁ ଆଠ ବର୍ଷ ବଡ ଥିଲେ । ତଥାପି ଆମର ସଂପର୍କ ଧୀରେ ଧୀରେ ଗାଢରୁ ଗାଢତର ହେଲା । ମୁଁ ତାଙ୍କ ପରିବାରର ସଦସ୍ୟ ହୋଇଗଲି । ସେ ବି ଆମ ଘରର ଏକ ସମ୍ମାନନୀୟ ସଭ୍ୟ ହୋଇଗଲେ । ବାଲୁଗାଁ ହୋଇଗଲା ମୋର ଦ୍ୱିତୀୟ ଘର । ମୁଁ ପ୍ରାୟ ଶହେରୁ ବେଶି ଥର ତାଙ୍କ ଘରକୁ ଯାଇଥିବି । ସେତେବେଳେ ମଉସା (ତପନ ଭାଇଙ୍କ ପିତା ନାଟ୍ୟକାର ପଦ୍ମଚରଣ ପଟ୍ଟନାୟକ) ଓ ମାଉସୀ (ତପନ ଭାଇଙ୍କ ମା) ଜୀବିତ ଥିଲେ । ତାଙ୍କର ଗୋଟିଏ ସ୍କୁଟର ଥିଲା । ମୁଁ ପହଂଚିଗଲେ, ସେଇ ସ୍କୁଟର୍‌ରେ ଆମେ ବୁଲୁ, ବାଲୁଗାଁ' ଠୁ ବଡକୂଳ, ବାଣପୁର ଠୁ ଖଲ୍ଲିକୋଟ । ଓମ୍ ପ୍ରକାଶ ଅଗ୍ରୱାଲର ନେହେରୁ ଯୁବ ସଂଗଠନ ଠାରୁ ରବି ମହାରଣାର ଫଟୋ ଷ୍ଟୁଡିଓ ।

ସ୍ମୃତି ତ ଅନେକ । ଲେଖି ବସିଲେ, ଗୋଟିଏ ଉପନ୍ୟାସ ହେବ । ସେ ଥିଲେ ଜଣେ ଭଲ କବି । କବିତାଠୁ ଶହେ ଗୁଣ ଭଲ ଥିଲା ତାଙ୍କର ବ୍ୟକ୍ତିତ୍ୱ । ଧୀର



ଓ ମଧୁର କଥା, ହସ ହସ ମୁହଁ-କେବେ ବି ଭୁଲି ହେବନି। ସେ ହିଁ ପ୍ରକୃତରେ ବୁଝିଥିଲେ- ଅତିଥି ହିଁ ଈଶ୍ୱର। ସେ କେବେ ଜୋର୍‌ରେ କଥା କହିବା କି ରାଗିବା – ପଂଚାବନ ବର୍ଷର ସଂପର୍କ ଭିତରେ ମୁଁ କେବେ ଦେଖିନି।

ଚିଲିକା ଓ ଶାଳିଆ ନଈ ତାଙ୍କର ପ୍ରିୟ ଥିଲା। ବହୁତ ଭଲ ପାଉଥିଲେ ଗାଁ'କୁ। ସୋଲରୀ ପାହାଡ, ଦୀପମୁଣ୍ଡିଆ- ତାଙ୍କ ସହିତ କେତେ ଥର ଯାଇଛି। ପ୍ରକୃତିକୁ ଭଲ ପାଇଥିବା ମଣିଷଟିଏ ମୋର ପ୍ରିୟ ତପନ ଭାଇ।

ସେ ଥିଲେ ମୋର କବି ବନ୍ଧୁ ଓ ବଡ ଭାଇ। ବୟସର ସ୍ୱଳ୍ପ ବ୍ୟବଧାନ ସତ୍ୱେ ସେ ବଂଧୁ ପରି ମୋ ସହିତ ମିଶୁଥିଲେ। ବଡ ଭାଇ ପରି ଉପଦେଶ ଦେଉଥିଲେ। ଦରକାର ପଡିଲେ ଶାସନ ବି କରୁଥିଲେ। ମୋର ଭାଗ୍ୟ, ଶେଷ ଜୀବନ ପର୍ଯ୍ୟନ୍ତ ମୁଁ ତାଙ୍କ ସହିତ ଥିଲି।

୧୯୮୦ ମସିହାରେ ତାଙ୍କର ବାହାଘର ହେଲା। ମୋତେ କହିଲେ 'ତୁ କାର୍ ନେଇ ଆସିବୁ। ମୁଁ ତୋରି ଗାଡିରେ ବାହା ହେବାକୁ ଯିବି। ତୁ ଗାଡି ଚଲେଇବୁ। ମୁଁ କହିଲି-ହଉ। ସେତେବେଳେ ମୋ ବାପାଙ୍କର ଏକ ଆମ୍ବାସ୍ୟାଡାର କାର୍ ଥିଲା। ମୁଁ ଆଉ ମୋର ବଂଧୁ ସନାତନ କାର୍ ନେଇ ପହଂଚିଲୁ ବାଲୁଗାଁ ରେ। ଅଳ୍ପ କିଛି ଫୁଲରେ ଗାଡି ସଜା ହେଲା। ତପନ ଭାଇ ବସିଲେ, ବର ବେଶରେ। ମୁଁ କାର୍ ଚଲେଇଲି। ଆମେ ଗଲୁ ବାଣପୁର ନିକଟବର୍ତୀ ଏକ ଗାଁ ପ୍ରତାପ। ବାହାଘର ହେଲା। ବାହାଘର ପରେ ମୁଁ ଅନେକଥର ଯାଇଛି ତାଙ୍କ ସହିତ ପ୍ରତାପ ଗାଁ'କୁ।

ଆଉ ଗୋଟିଏ ଘଟଣା। ମୁଁ ୧୯୭୬ ମସିହାରେ ବାଲେଶ୍ୱରରୁ ଭୁବନେଶ୍ୱର ଚାଲିଆସିଲି। ମୋର ଗୋଟିଏ ବାଜାଜ୍ – ୧୫୦ ସ୍କୁଟର୍ ଥିଲା। ତପନ ଭାଇ ଯେତେବେଳେ ଆସନ୍ତି, ସେଇ ସ୍କୁଟରରେ ଆମେ ବୁଲୁ। ଦିନେ ଆମେ ବାଣୀବିହାର ଯାଉଥିଲୁ। ସେ ପଛରେ ବସିଥିଲେ। ଆମେ ଗପି ଗପି ଚାଲିଥିଲୁ। ବାଣୀବିହାର ଛକ ଠୁ ବାଣୀବିହାର ଗେଟ୍ ଯାଏ ସେ କିଛି ନ କହିବାରୁ, ମୁଁ ପଛକୁ ଚାହିଁ ଦେଖିଲି, ସେ ପଛ ସିଟ୍‌ରେ ନାହାନ୍ତି। ୧୦୦ ମିଟର ଦୂରରେ ରାସ୍ତାରୁ ଝାଡିଝୁଡି ହୋଇ ଉଠୁଛନ୍ତି। ମୁଁ ଫେରିଲି। ମୋତେ କହିଲେ- ବଦ୍‌ମାସଟା କି ରେ ! କେମିତି ଚଲଉଛୁ ତୁ: ମୁଁ ତ ପଡିଲି, ମୋ ଘଡି ବି ଭାଙ୍ଗିଗଲା। ନା ମୁଁ ହସିପାରିଥିଲି ନା କାନ୍ଦି ପାରିଥିଲି।

ତପନ ଭାଇଙ୍କର ପୁରୀରେ ଦଶରୁ ବାର ବର୍ଷ ରହିବା ସମୟରେ ସେ ପ୍ରାୟତଃ ମାସକୁ ଥରେ କି ଦି'ଥର ଭୁବନେଶ୍ୱର ଆସନ୍ତି। ଭୁବନେଶ୍ୱର ଆସିଲେ ପ୍ରଥମେ ପୁରୁଣା ବସ୍‌ଷ୍ଟାଣ୍ଡ୍‌କୁ ଆସନ୍ତି। ପୁରୀରୁ ବାହାରିବା ସମୟରେ ମୋତେ





ଫୋନ୍ କରନ୍ତି ଆସିବା ପାଇଁ। ତପନ ଭାଇ ଆସିଲେ ହିଁ ମୁଁ ପୁରୁଣା ବସ୍‌ଷ୍ଟାଣ୍ଡ୍ ଯାଏ। ଚ' ପିଆଯାଏ। ବିସ୍କୁଟ ଖିଆଯାଏ। କିଛି ସାହିତ୍ୟିକ ବନ୍ଧୁ ଦେଖା ହୁଅନ୍ତି। ଆସର ଜମେ। ତପନ ଭାଇ ଆସିଲେ ପୁରୁଣା ବସ୍‌ଷ୍ଟାଣ୍ଡ୍ ଚଳଚଂଚଳ ହୋଇଯାଏ। ସେ ଘଂଟେ କି ଦି'ଘଂଟା ରହନ୍ତି। ତା'ପରେ କଟକ ଯାଆନ୍ତି ବହି କାମରେ। ଦୁଃଖର କଥା, ଗତ ଏକ ବର୍ଷ ହେବ ସେ ଆଉ ପୁରୁଣା ବସ୍‌ଷ୍ଟାଣ୍ଡ୍ ଆସିପାରୁନଥିଲେ।

ଚାକିରୀର ଶେଷ କେତେ ବର୍ଷ ଓ ଅବସର ନେଲା ପରେ ବି କିଛି ବର୍ଷ ସେ ପୁରୀରେ ରହିଥିଲେ। ମୁଁ ବାରମ୍ବାର କହିଲା ପରେ, ପ୍ରାୟ ସାତ ବର୍ଷ ତଳେ ସେ ଆସି ଭୁବନେଶ୍ୱର ସାମନ୍ତରାପୁରର ଏକ ଭଡା ଘରେ ରହୁଥିଲେ। ମୁଁ ସେ ଘରକୁ ଅନେକ ଥର ଯାଇଛି। ଭୁବନେଶ୍ୱର ଆସିବାର କିଛି ବର୍ଷ ପରେ ସେ ଆତ୍ମଜୀବନୀ ଲେଖିବା ଆରମ୍ଭ କରିଥିଲେ। ମୁଁ ଯେତେବେଳେ ଯାଏ କହନ୍ତି - ମୋ ଜୀବନୀ ବହୁତ ବଡ ହେବ। ବହୁ ଲୋକଙ୍କ ବିଷୟରେ ଲେଖିବାର ଅଛି। ମାୟାଧର ମାନସିଂହଠୁ ଆରମ୍ଭ କରି ତୋ ପର୍ଯ୍ୟନ୍ତ। ସବୁଠୁ ବେଶି ଲେଖିବି ବାପା (ମୋ ବାପା ଯଦୁନାଥ ଦାଶ ମହାପାତ୍ର)ଙ୍କ ବିଷୟରେ ।

ଦେହ ଖରାପ ସତ୍ତ୍ୱେ, ସେ ନିୟମିତ ଲେଖୁଥିଲେ। ଦିନେ ମୁଁ ତାଙ୍କୁ କହିଲି- ମୋ ବିଷୟରେ ଲେଖିବ ତ ! ସେ କହିଲେ -ତୋ ବିଷୟରେ ଲେଖିବିନି ! ତୁ ମୋର ଭାଇଠୁ ଅଧିକ। ମୋର ପ୍ରିୟ କବି- ଏମିତି କେତେ କ'ଣ। ତାଙ୍କ ପୁଅଠୁ, ଯାହା ଜାଣିଲି, ସେ ସାରିପାରିନାହାନ୍ତି ତାଙ୍କ ଆତ୍ମ-ଜୀବନୀ। ଆହୁରି କିଛି ବାକି ରହିଗଲା। ତା' ଭିତରେ ମୁଁ ବୋଧେ ରହିଗଲି। ଯାହା ବି ହେଉ, ସେ ଅଧାରୁ ବେଶି ଲେଖିଥିବା ଆତ୍ମଜୀବନୀ କେମିତି ପ୍ରକାଶିତ ହେବ, ସେଥିପାଇଁ ଆମେ ସମସ୍ତେ ଉଦ୍ୟମ କରିବା ଉଚିତ।

ଦରଦୀ ମଣିଷଟିଏ ତପନ ଭାଇ। ପୁରସ୍କାର ପଛରେ କେବେ ଗୋଡେଇ ନାହାନ୍ତି। ନିଜର, ନିଜ ସାହିତ୍ୟର ପ୍ରଚାର ସେ କରିନାହାନ୍ତି। ବୋଧହୁଏ ସେଇଥିପାଇଁ, ତାଙ୍କ ସାହିତ୍ୟର ମୂଲ୍ୟାୟନ ସଠିକ୍ ଭାବରେ କରାଯାଇନାହିଁ, ଯାହା ଅତ୍ୟନ୍ତ ପରିତାପର ବିଷୟ। ତଥାପି ସେ ବଂଚି ରହିବେ ଆମ ହୃଦୟରେ, ପାଠକମାନଙ୍କ ହୃଦୟରେ। ଆସିଛି ଦେଖି ମୋ କଳାବଦନକୁ-ଏଇ ଗୋଟିଏ ଗୀତ ତାଙ୍କୁ ଅମର କରି ରଖିବ। ସେ କାଳଜୟୀ ସ୍ରଷ୍ଟା। ତାଙ୍କ ଗୀତ, କବିତା, ଉପନ୍ୟାସର ବିନାଶ ନାହିଁ। ତାଙ୍କ ପରି ସହଜ, ସରଳ ଓ ଭଲ ମଣିଷଟିଏ ଜନ୍ମ ନେବାକୁ କେତେ ବର୍ଷ ଯେ ଲାଗିବ, କିଏ କହିବ !

ମୋ - ୯୮୬୧୨୯୬୨୭୫





# ସଞ୍ଜରେ ବାଙ୍ଗରା ଲୋକ :

**କମଳ କୁମାର ମହାନ୍ତି**

ପ୍ରାୟ ତିରିଶ ବର୍ଷ ତଳେ ଦିନେ ଏକ ଉତିଆଣି ସଞ୍ଜରେ ଭେଟିଥିଲି ଜଣେ ବାଙ୍ଗରା ଲୋକଙ୍କୁ । ଦେଖିବାକୁ ଟିକେ ମାନସିଂହ ଆଉ ଟିକେ ସଚ୍ଚି ରାଉତରାୟ ପରି । ତାଙ୍କସହ ଭେଟ କରାଇଥିବା ଲୋକ ଅଗ୍ରଜ ସାହିତ୍ୟିକ ପରମ ପୂଜନୀୟ ରମାକାନ୍ତ ମିଶ୍ର ଏବେ ବୟସର ଅପରାହ୍ଣରେ ଉପନୀତ । ହେଲେ ଭୁବନେଶ୍ୱରର ବାଣୀପୀଠ ପୁରୁଣା ବସଷ୍ଟାଣ୍ଡରେ ମୁଁ ପ୍ରଥମେ ଭେଟିଥିବା ସେ ବାଙ୍ଗରା ଲୋକ ଆଉ ନାହାନ୍ତି । ସେ ମୋ' ଭିତରେ ଏମିତି କି' ମାୟା ଲଗେଇ ଚାଲିଗଲେ କେଜାଣି, ତାଙ୍କ ବାହୁଡ଼ିଯିବା କଥାଟି ମୋର ବରଦାସ୍ତ ହେଉନାହିଁ । ଭାରି ବିଚଳିତ ଲାଗୁଛି । ଭୁଲି ହେଉନାହିଁ ଜମ୍ମା ତାଙ୍କ ଶାନ୍ତ ସୌମ୍ୟ ଚେହେରା ଭିତରର ପ୍ରାଣୋଚ୍ଛଳ ମଣିଷଟିକୁ। ତାଙ୍କରି ଅବର୍ତ୍ତମାନରେ ହିଁ ମୁଁ ଜୀବନରେ ଭେଟିଥିବା ଅନେକ ଲୋକଙ୍କଠୁଁ ସେ ବେଶୀ ବେଶୀ ଡେଙ୍ଗା ମନେ ହେଉଛନ୍ତି ଆଜି !

ସେ ହେଉଛନ୍ତି କବି, ଗୀତିକାର, ଔପନ୍ୟାସିକ, ନାଟ୍ୟକାର ତପନ ପଟ୍ଟନାୟକ ଓରଫ୍ ଆମ ସମସ୍ତଙ୍କର ପ୍ରିୟ ତପନ ଭାଇ । ବାଲୁଗାଁ ମାଟିର ଧ୍ୟାନସ୍ଥ ତପସ୍ୱୀ ସିଏ, ଚିଲିକା କୂଳରେ ଠିଆ ହୋଇ ସାରାକାଳ ରାତି ପକ୍ଷୀର ଗୀତ ଶୁଣୁଥିବା ଭାବରସିକ କବି ।

ବାଲୁଗାଁ ମାଟିରେ ତାଙ୍କରି ଜନ୍ମ । ସାଧନାର କ୍ଷେତ୍ର ବାଲୁଗାଁରୁ ଲମ୍ବି ଆସିଥିଲା ଶଙ୍ଖକ୍ଷେତ୍ର ଶ୍ରୀକ୍ଷେତ୍ର ଦେଇ ଏକାମ୍ର କ୍ଷେତ୍ରଯାଏ ।

ତପନ ପଟ୍ଟନାୟକ କାହାର ପ୍ରିୟ ଥିଲେ କେଜାଣି, ଓଡ଼ିଆ କବିତାରେ ନିଃଶ୍ୱାସ ପ୍ରଶ୍ୱାସ ନେଉଥିବା ସମସ୍ତ କବି କିନ୍ତୁ ତାଙ୍କରି ପ୍ରିୟତା ଲାଭ କରିଥିଲେ । ସେଥିପାଇଁ ସାହିତ୍ୟ ଦୁନିଆ ତାଙ୍କ ଅବର୍ତ୍ତମାନତାକୁ ଝୁରେ ଆଜି । ମୁଁ ଭାବେ, ସେ ଜଣେ ସଚ୍ଚା କବି ହୋଇ ଜନ୍ମ ନେଇଥିଲେ, ସବୁଠାରେ ଭାବ ଜନ୍ମେଇ କେଉଁ ଅଜଣା ଗନ୍ତବ୍ୟର ପଥଚାରୀ ସାଜିଲେ । ବେଳ ନହେଉଣୁ ଫେରିଗଲେ । ବଞ୍ଚିଥିବାବେଳେ ସେ ଏତେ ସ୍ନେହ ବାଣ୍ଟିଦେଇଯାଇଥିଲେ ଯେ ତାହା ହିଁ ଆମ ଛାତିରେ ଘରଟିଏ କରିଛି ।

ଶ୍ରୀକ୍ଷେତ୍ରରେ ଥିବାବେଳେ ତପନ ଭାଇ ନାନା ରୋଗ ଦୁଃଖ ଯାତନା ବି କେବଳ ଜଗନ୍ନାଥଙ୍କ ସାନ୍ନିଧ୍ୟ ପାଇ ଭୁଲି ଯାଉଥିଲେ । ଜଗନ୍ନାଥଙ୍କ ଅଶେଷ କରୁଣାରୁ





କ୍ୟାନ୍ସର ବି ତାଙ୍କୁ ଛାଡ଼ି ପଳାଇଲା । ତପନ ଭାଇଙ୍କର ଦୁଃଖ ସହ ମିଳାମିଶା, ଅଭିଯୋଗହୀନ ଲମ୍ବା ଯାତ୍ରା । ତେଣୁ ତାଙ୍କର ଗୋଟିଏ ବହିର ନାଁ 'ଦୁଃଖ ଗୋଟିଏ ଗାଁ'ର ନାଁ' । ମୋତେ ଲାଗେ ତାଙ୍କର ଅସରା ଦୁଃଖରେ ବି ସେ ଯେମିତି ଭାବର ମୌନ ତପସ୍ୱୀ ଥିଲେ । ତାଙ୍କର ଆଉ ଏକ ବହିର ନାଁ 'ମଗ୍ନ ମୌନ' ଦେଇଥିଲେ।

ଦିନେ 'ଏଥେନା' ପ୍ରକାଶନର ରାଜୁଭାଇଙ୍କ ଅଫିସ୍ (ପ୍ରଥମ ମହଲା) ରେ ଥାଏ ମୁଁ । ଖାଲିଥିବା ତଳ ମହଲାରେ ତପନ ଭାଇ ଆସି ରହନ୍ତୁ କହିବାରୁ ଉଦାରମନା ରାଜୁଭାଇ ହଁ ଭରିଲେ । ତା'ପରଠୁଁ 'ସମନ୍ୱୟ' ପ୍ରକାଶନ ତଳେ ଓ 'ଏଥେନା' ଉପର ମହଲାରେ । ମଝିରେ ମଝିରେ ଯାଏ ମୁଁ । ଉଭୟ ମୋର ପ୍ରିୟ । ତପନ ଭାଇଙ୍କୁ କ୍ୟାନ୍ସର ଛାଡ଼ି ଚାଲିଗଲା, ହେଲେ କିଡନୀ ଅଚଳ ହୋଇଯିବା ଯୋଗୁଁ ଡାୟାଲିସିସ୍ ନେଉଥିଲେ । ପ୍ରଥମେ ସପ୍ତାହରେ ଦୁଇଦିନ, ତା' ପରେ ତିନିଦିନ । କିନ୍ତୁ ଜୀବନକୁ ସାରୁପତ୍ରରେ ବାନ୍ଧିବା ଲୋକ ନୁହଁନ୍ତି ସେ । ଶାରୀରିକ ପୀଡ଼ାକୁ ଫୁଁ' କରିଦେଇ ସେ ଅନ୍ୟ କାରଣକୁ ନେଇ ବ୍ୟଥିତ ହେଉଥିଲେ । ତାଙ୍କର ଆତ୍ମଜୀବନୀକୁ ସୀମିତ ସମୟରେ ସାରି ନପାରିବାର ଦୁଃଖରେ ଅହରହ ଘାରି ହେଉଥିଲେ ।

ମୁଁ ଜାଣେ ତପନ ଭାଇଙ୍କର ଘର ଜଞ୍ଜାଳ ଅଗତାନ । ସେଥିକୁ ତାଙ୍କର ପରବାୟ ନାହିଁ । ଚିଲିକାକୁ ନେଇ ସଙ୍କଳନଟିଏ ନହେଇପାରିବାର ଦୁଃଖ ରହିଗଲା । ସେ କୂଳରେ ଠିଆହେଲେ ଚିଲିକା ଯେମିତି ହାତଠାରି ଡାକୁଥିଲା – ଆ,ଆ, ମୋ' ଭିତରର ନୀଳିମାକୁ ଖୋଜ୍ , ମୋ' ବିଶାଳତା ଭିତରେ ତୋ ବିନୟୀ ଭାବକୁ ଯୋଡ଼ିଦେ', ତୋ' କବିତାର ସାବଲୀଳ ଛନ୍ଦରୁ କିଛି ମୋ ଅଧୀର ଉର୍ମୀରେ ମିଶାଇ ଦେ' । ମୋ' ଭିତରେ ତଲ୍ଲୀନ ହୋଇଯା' । ଏ ଆହ୍ୱାନରେ ଅଧିର ହେଉଥିଲେ କବି ସାରାକାଳ । ସେ ଥିଲେ ପ୍ରକୃତିର ଉପାସକ, ଭାବ ରସିକ, ଛାନ୍ଦସିକ । ତାଙ୍କ ଚେତନାକୁ ଯିଏ ବୁଝିଛି, ସେ ଜାଣିଛି ତପନୀୟ କାବ୍ୟଧାରା କେତେ ନିଆରା । ଅଯଥା ବାଦ ଓ ଦୁର୍ବୋଧ୍ୟତାଠୁଁ ଦୂରତା ରଖି ଜୀବନ, ପ୍ରେମ ଓ ପ୍ରତ୍ୟୟକୁ ନିଜ କବିତାର ଉପାଦାନ କରିଥିଲେ ବୋଲି କତିପୟ ପାଶ୍ଚାତ୍ୟମୁହାଁ କବି ତାଙ୍କ ସାବଲୀଳ ଛନ୍ଦକୁ ନାକ ଟେକନ୍ତି । ହେଲେ ସେ ମାନସିଂହଙ୍କ ଚାଟ । ନିଜ ଛନ୍ଦରେ ନାଚିବା ଲୋକ । ତାଙ୍କପାଇଁ କବିତା ବୋଇଲେ ପ୍ରେମ,ପ୍ରତ୍ୟୟ ଓ ଭୋଗିଥିବା ଜୀବନ । ସେ ବାଲୁଗାଁର ସୂର୍ଯ୍ୟ, କେବଳ ଉଦୟରାଗ ଦେଖିଛନ୍ତି, ଅସ୍ତରାଗ ନୁହେଁ ।



ସେ ଲେଖିଥିଲେ :

'କାଲି ସକାଳକୁ ଯଦି କେବେ ଦିନେ
ପୃଥିବୀରେ ଆଉ ମୁଁ ନଥିବି
କବିତାର ଖାତା ବହି
ସାବତ ମାଆର ପିଲା ଭଳି
ମୁହଁମାଡ଼ି ରହିଥିବେ ପଡ଼ି
ଶୂନଶାନ ଚଉକି ଟେବୁଲ
ଚଷମା କଲମ
ଯେଉଁମାନେ ମତେ ଦିନେ
ମୁହଁ କେବେ ଆଡ଼େଇ ନାହାନ୍ତି
ଆରଂଭରୁ ଯେଉଁମାନେ ଥିଲେ ମୋର
ପ୍ରିୟ ଓ ପରମ ।
ସେମାନଂକ କିଛି ବ୍ୟତିକ୍ରମ ନାହିଁ
ସେମାନେ ତ ଜଡ଼ ଓ ନିର୍ଜୀବ
ତଥାପି ସେମାନେ ମତେ ଖୋଜିବେ ଝୁରିବେ
ସଂତୁଳିତ ହୋଇ ଦୁଃଖରେ ଜଳିବେ । (ଅଯୋଗବାହ)

କବିର ଜୀବନ ବଞ୍ଚିଥିଲେ ତପନ ଭାଇ । କେହି କେହି କହନ୍ତି ନବ କିଶୋର ମିଶ୍ର ତାଙ୍କ ଲିଖିତ ଜଗନ୍ନାଥ ଜଣାଣ 'ମୁଁ ଆସିଛି ଦେଖି ମୋ କଳାବଦନକୁ...' ଗାଇ ତାଙ୍କୁ ପ୍ରସିଦ୍ଧି ଦେଲେ । ହେଲେ ଆଉ ଅନେକଙ୍କ ଭଳି ମୁଁ କହିବି, ନବ କିଶୋର ମିଶ୍ର ତାଙ୍କ ଗୀତ ଗାଇ ଜନମାନସରେ ପରିଚିତି ପାଇଲେ । ଏବେ ସେ ଜଣେ ବିଶିଷ୍ଟ ଗାୟକ ଓ ଆମର ଗର୍ବ ।

ତପନ ଭାଇ ନାହାନ୍ତି ଆଜି । ଚିଲିକାର ଉର୍ମି ସେହି ଦୁଃଖରେ ଯେମିତି ସ୍ଥିର,ନିର୍ବେଦ ଲାଗୁଛି । କବିଙ୍କର ଅବର୍ତ୍ତମାନରେ ବାଲୁଗାଁ ମାଟି ପାଲଟିଛି ଦୁଃଖର ଗାଁ । ସେ ମାଟିର ବରପୁତ୍ର ତପନ ଭାଇଙ୍କୁ ମୋର ଅଶ୍ରୁଳ ପ୍ରଣାମ ଓ ଶ୍ରଦ୍ଧାଞ୍ଜଳି । ଭାଉଜ ଓ ସମ୍ବିତଙ୍କୁ ନେଇ ସେ ଛାଡ଼ି ଯାଇଥିବା ପରିବାର ଏତେବଡ଼ ଦୁଃଖ ସହିଯିବାପାଇଁ ସାହସ ବାନ୍ଧନ୍ତୁ, କୋଟି କୈବଲ୍ୟନାଥ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ମୋର ଗୁହାରି ଏତିକି ।







# ତପନ ପଟ୍ଟନାୟକ ଜୀବନ ଓ ସାହିତ୍ୟ

ପିତା : ସ୍ୱର୍ଗତ ନାଟ୍ୟକାର ପଦ୍ମଚରଣ ପଟ୍ଟନାୟକ

ମାତା : ସ୍ୱର୍ଗତ ସତ୍ୟଭାମା ପଟ୍ଟନାୟକ

ଜନ୍ମ ତାରିଖ : ୨୮ ଜୁନ୍ ୧୯୫୧ ମସିହା

ଜନ୍ମସ୍ଥାନ : ଗଞ୍ଜାମ ଜିଲ୍ଲାର ଛତ୍ରପୁର ସରକାରୀ ଡାକ୍ତରଖାନା

ବାସସ୍ଥାନ : ପ୍ରସିଦ୍ଧ ଚିଲିକା ହ୍ରଦବର୍ତ୍ତୀ ଖୋର୍ଦ୍ଧା ଜିଲ୍ଲାର ବାଲୁଗାଁ

ବାଲ୍ୟକାଳ : ଗଞ୍ଜାମ ଜିଲ୍ଲା ନିକଟସ୍ଥ ଚମାଖଣ୍ଡିର ଝାଉଁ ଜଙ୍ଗଲ ଭିତରେ ଜଣେ ସନ୍ନ୍ୟାସୀଙ୍କ ଆଶ୍ରମରେ କଟିଥିଲା। ପିତା ନାଟ୍ୟକାର ପଦ୍ମଚରଣ ଥିଲେ ସାହିତ୍ୟିକ ଓ ସଙ୍ଗୀତକାର। ପିଲାଦିନୁ ତାଙ୍କର ପ୍ରଭାବ ପ୍ରଥମେ ତାଙ୍କ ଉପରେ ପଡ଼ିଥିଲା। ପିଲାକାଳରୁ ସେ ଲାଭ କରି ଆସିଥିଲେ ଖ୍ୟାତନାମା କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ରାଧାମୋହନ ଗଡ଼ନାୟକ, ଡକ୍ଟର ମାୟାଧର ମାନସିଂହ ଏବଂ ସଚ୍ଚି ରାଉତରାୟଙ୍କ ପରି ବରେଣ୍ୟ ସ୍ରଷ୍ଟାମାନଙ୍କର ନିବିଡ଼ ସ୍ପର୍ଶ, ସ୍ନେହ ଓ ଆଦର। ଏହି ସବୁ ବରିଷ୍ଠ ସାଧକମାନଙ୍କର ନିକଟତମ ହୋଇ ସାହିତ୍ୟ ପ୍ରତି ପ୍ରଗାଢ଼ ଅନୁରକ୍ତି ସୃଷ୍ଟି ହେବା ସହ ସାଧନାମୁଖୀ ସେ ହୋଇଥିଲେ। ପିଲାଦିନର ସ୍ମୃତି ଭିତରେ ଚମାଖଣ୍ଡିର ନିଘଞ୍ଚ ଝାଉଁବଣର ଅଦୂରରେ ଅବସ୍ଥିତ ଥିବା ଗୋପାଳପୁର ସମୁଦ୍ରର ନିର୍ଜନ ବେଳାଭୂଇଁ, ତା'ର ଶୀତଳ ନୀଳ ତରଙ୍ଗ, ନିଜ ମାମୁଘର ଗାଁ ପଦ୍ମାବତୀର ପାହାଡ଼େ ଉଚ୍ଚର ପୋଖରୀ ହୁଡ଼ାର ଟାଙ୍ଗରା ନାଲି ମୁଣ୍ଡିଆ, ନୀଳ ତାଂପରା ପାଟରେ ଫୁଟୁଥିବା ନାଲି, ନୀଳ କଇଁ ତାଙ୍କର ସାହିତ୍ୟିକତାକୁ ଉଦ୍ରେକ କରିଥିଲା। ତାଙ୍କୁ ସାଙ୍ଗ ଦେଇଥିଲା ନିଜ ବାସସ୍ଥାନ ବାଲୁଗାଁ ତୀରବର୍ତ୍ତୀ ପ୍ରସିଦ୍ଧ ଚିଲିକା ହ୍ରଦର ନାନା ରଙ୍ଗର ବେଶ ପରିପାଟୀ। ଇତିହାସ ପ୍ରସିଦ୍ଧ ଦୀପମୁଣ୍ଡିଆ, କାଳିଜାଇ, ନଳବଣ ଏବଂ ବର୍ଷର ସବୁ ସମୟରେ ଭେଳା ଭେଳା ଉଡୁଥିବା, ପହଁରୁ ଥିବା, ଚିଲିକାର



ବେଶ ବର୍ଦ୍ଧନ କରୁଥିବା ଦେଶୀୟ ଓ ଦେଶାନ୍ତରୀ ପକ୍ଷୀମାନଙ୍କର ମଧୁର କଳକୂଜନର ମହୋତ୍ସବ। ଗୁଜୁରାଣ ମେଣ୍ଟାଇବା ପାଇଁ ସେ ଡକ୍ଟର ହରେକୃଷ୍ଣ ମହତାବଙ୍କ ପ୍ରେରଣାରେ କିଛି ଦିନ ନିଜ ଅଞ୍ଚଳ ବାଲୁଗାଁର ସାମ୍ବାଦିକତା କରିଥିଲେ। ମାତ୍ର ୧୮ ବର୍ଷ ବୟସରେ ତାଙ୍କର ପ୍ରଥମ ଏକାଙ୍କିକା ପୁସ୍ତକ **"ଟୋପାଏ ଅଶ୍ରୁ"** ମଞ୍ଚସ୍ଥ ହୋଇ ପ୍ରକାଶିତ ହୋଇଥିଲା। ପ୍ରାୟ ୧୯୬୭ ମସିହାଠାରୁ ସେ ଲେଖାଲେଖି ଅବ୍ୟାହତ ରଖିଛନ୍ତି। ୧୯୭୦ ମସିହାରୁ ଆଜି ପର୍ଯ୍ୟନ୍ତ ପ୍ରକାଶିତ ହୋଇ ଚାଲିଛି ୪୭ ଖଣ୍ଡରୁ ଊର୍ଦ୍ଧ୍ୱ ପୁସ୍ତକ। ସେ ସବୁ ବିଭାଗରେ କଲମ ଚଳାଇଛନ୍ତି।

ତାଙ୍କ ଦ୍ୱାରା ରଚିତ ପୁସ୍ତକ -

ଏକାଙ୍କିକା : ମଲାନଈର ଶୋଷ।

ନାଟକ : ଟୋପାଏ ଅଶ୍ରୁ।

ଶିଶୁ ସାହିତ୍ୟ (କବିତା) : ଟିକି ଫୁଲର ମୂଲ, ଘାସଫୁଲ, ନଈ ନାଆ ନାଉରି।

ଗୀତିକବିତା : ସ୍ୱରଲିପି, ଧୂପ ଦୀପ ନୈବେଦ୍ୟ, ଅସରାଲୁହ ଅଭୁଲା ଗୀତ।

ରହସ୍ୟ ଉପନ୍ୟାସ : ଅଦୃଶ୍ୟ ମାନବ।

ଉପନ୍ୟାସ : ଜୀବନକାବ୍ୟ, ବିଦଗ୍ଧବସନ୍ତ, ଅଶ୍ରୁ ଓ ଅନ୍ଧକାର, ଝରାଶିଶିର, ପ୍ରତିମା, କ୍ଳାନ୍ତନଟୀ, ଚଟିଘର, ଜନ୍ମାନ୍ତର, ନୀଳନିର୍ଜନ।

କବିତା : କାବ୍ୟତାରା, ସୀମା ଓ ସ୍ମାରକୀ, ସ୍ରୋତସ୍ୱତୀ, ଝଡ଼, ମୁଠାଏ ତାରା, ବିନିମୟ, ଢେଉ ଢେଉ ଅନ୍ଧକାର, ଶୂନ୍ୟ ଧାନକ୍ଷେତ ମଧୁକ୍ଷରା, ଫେରିବାର ମୂର୍ଚ୍ଛନାରେ, ରକ୍ତର ବାଷ୍ପରେ, ଆରଜନ୍ମ, ମଗ୍ନମୌନ, ଅନିନ୍ଦିତା ଓ ଅନ୍ୟାନ୍ୟ କବିତା, ଅନ୍ଧାରର ପାଦଚିହ୍ନ, ଦୁଃଖ ଗୋଟିଏ ଗାଁ ର ନାଁ, ଅରଣ୍ୟ ଗହନ ପଥ, ସୀମିତ ଏଇ ସମୟ ଦେହେ, ପ୍ରଦକ୍ଷିଣ ପ୍ରତିପ୍ରସ୍ତ, ରକ୍ତଲଗ୍ନା, ଅଝଟପଣରୁ ଆଞ୍ଜୁଳାଏ, ଭୁଲିଯାଇଥିବା ଗୀତର ସ୍ୱର, ଆସ୍ତୀର୍ଣ୍ଣ, ଅଯୋଗବାହ, ଅପହଞ୍ଚ, ମୁଁ ନ ଥିଲେ ବି, ଅତଃପର ଓ ଶୂନ୍ୟକାଳ ଆଦି ୪୭ରୁ ଊର୍ଦ୍ଧ୍ୱ ପୁସ୍ତକ।

ଶ୍ରୀ ପଟ୍ଟନାୟକ ଥିଲେ କେବଳ ଗଭୀର ସାଧନାରେ ବିଶ୍ୱାସୀ। ନିଷ୍ଠା ହିଁ ସଫଳ କୃତିତ୍ୱକୁ ଆଗେଇ ନେଇପାରେ। ସମସ୍ତ ଆପଦ ବିପଦକୁ ଅତିକ୍ରମ କରି







ଆଗକୁ ଯିବା ଓ ପୃଥିବୀର ସବୁ ମୁହୂର୍ତ୍ତକୁ ନିରବଧି କାଳ ପାଇଁ ସାହିତ୍ୟର ଓଁକାର ଧ୍ୱନିରେ ଅନୁରଣିତ କରିବା ଥିଲା ତାଙ୍କର ଇଚ୍ଛା ଓ କାମନା।

ପୁରସ୍କାର :

୧. ମୀନାବଜାର ପୁରସ୍କାର, ପ୍ରଜାତନ୍ତ୍ର ପ୍ରଚାର ସମିତି, ୧୯୭୦

୨. ପ୍ରଜାତନ୍ତ୍ର ସାହିତ୍ୟ ପୁରସ୍କାର, ପ୍ରଜାତନ୍ତ୍ର ପ୍ରଚାର ସମିତି, ୧୯୮୨

୩. ରାଜଧାନୀ ପୁସ୍ତକ ମେଳା, ଭୁବନେଶ୍ୱର, ୨୦୦୬

୪. ଆକାଶବାଣୀ ଅବସର ବିନୋଦନ କେନ୍ଦ୍ର, (ସ୍ୱର୍ଣ୍ଣପଦକ) ୨୦୧୨

୫. ଓଡ଼ିଆ ଗୀତିକବି ସମାଜ, କଟକ, ୨୦୧୩

୬. ଖୋରଧା ଗୌରବ ସମ୍ମାନ ଆଦି ପୁରସ୍କାର, ୨୦୧୩

ଏହାଛଡ଼ା ଆହୁରି ଅନ୍ୟାନ୍ୟ ଅନେକ ପୁରସ୍କାର ସେ ବି ଲାଭ କରିଛନ୍ତି।





# ଚିଲିକା ବୋଇତ ବନ୍ଦାଣ ମହୋତ୍ସବ

ସ୍ଥାନ : ଚିଲିକାକୂଳ, ବାଲୁଗାଁ, ଖୋର୍ଦ୍ଧା

ତାରିଖ : ୧୨.୧୧.୨୦୧୯

## ଚିଲିକା ସମ୍ମାନ- ୨୦୧୯

ପ୍ରାପ୍ତେଷୁ,

**ଶ୍ରୀଯୁକ୍ତ ତପନ ପଟ୍ଟନାୟକ**

ପ୍ରଥିତଯଶା ଗୀତିକାର, ନାଟ୍ୟକାର ଓ ଔପନ୍ୟାସିକ

ବାଲୁଗାଁ, ଖୋର୍ଦ୍ଧା

[illegible] ବନ୍ଧୁ,

ମରାଳମାଳିନୀ ନୀଳାମ୍ବୁ ଚିଲିକା [illegible] ଅନ୍ତରାସ୍ଥିତ ଗ୍ରାମର ଏକ ସଂସ୍କୃତି ସଂପନ୍ନ ପରିବାରରେ ଜନ୍ମ ଲାଭ କରି ଆପଣ [illegible] ଆପଣ ମହକାଇ ଦେଇଛନ୍ତି ଓଡ଼ିଶାର ସାରସ୍ୱତ ପରିମଣ୍ଡଳକୁ । ଆଧୁନିକ ଓଡ଼ିଆ ସାହିତ୍ୟ ଆକାଶର ପରିମଣ୍ଡଳରେ ଆପଣ ଏକ ସୁପରିଚିତ କବି ପ୍ରତିଭା; ସାରସ୍ୱତ ଦିଗ୍‌ବଳୟରେ ପ୍ରତିଶ୍ରୁତିର ଦୀପ୍ତଭାନୁ; ଏକ ସୌନ୍ଦର୍ଯ୍ୟଲିପ୍ତ ସୁମନ । ଆପଣଙ୍କର ଅଭିନବ କାବ୍ୟ ଚାତୁରୀ ଓ ସୁଖପାଠ୍ୟ ଶୈଳୀପାଇଁ ଆପଣ ପାଠକ ମହଲରୁ ଲାଭ କରିଛନ୍ତି ଭୁରି ଭୁରି ପ୍ରଶଂସା । ଆପଣଙ୍କ କବିତାର ଛତ୍ରେ ଛତ୍ରେ ପ୍ରତିଫଳିତ ହୋଇଛି ମାନବବୋଧ, ସୌନ୍ଦର୍ଯ୍ୟବୋଧ ଓ ପ୍ରୀତିପଲ୍ଲବର ଅନୁପମ ଶବ୍ଦ ସମ୍ଭାର । ଆପଣଙ୍କ ରଚିତ ୩୦ରୁ ଉର୍ଦ୍ଧ୍ୱ କବିତା ସଂକଳନ, ଉପନ୍ୟାସ, ନାଟକ, ଓଡ଼ିଆ ସାହିତ୍ୟର ଦୀପ୍ତି ଓ ଦ୍ୟୁତିକୁ କରିଛି ମହିମାମଣ୍ଡିତ । ଆପଣଙ୍କ ସାରସ୍ୱତ କୃତି ପାଇଁ ଓଡ଼ିଶାର ଅନେକ ସାରସ୍ୱତ ଅନୁଷ୍ଠାନରୁ ଲାଭ କରିଛନ୍ତି ଅଜସ୍ର ପ୍ରଶଂସାର ମାନପତ୍ର । ଆପଣଙ୍କ ରଚିତ ଭଜନ 'ମୁଁ ଆସିଛି ଦେଖି ତୋ କଳା ବଦନକୁ' ଏକ କାଳଜୟୀ ସୃଷ୍ଟି ଯାହା ଓଡ଼ିଶାର ପୁରପଲ୍ଲୀରେ ଆପଣଙ୍କୁ ପ୍ରସିଦ୍ଧି ର ସ୍ୱୀକୃତି ପ୍ରଦାନ କରିଛି ।

ହେ ପ୍ରଥିତଯଶା ସାରସ୍ୱତ ସାଧକ

ଆପଣଙ୍କର ଜୀବନବ୍ୟାପି ସାରସ୍ୱତ ସାଧନାକୁ ସ୍ୱୀକୃତି ଜଣାଇ ଚିଲିକା ବୋଇତ ବନ୍ଦାଣ ମହୋତ୍ସବ ଆପଣଙ୍କୁ ଚିଲିକା ସମ୍ମାନ ୨୦୧୯ ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେକରିବା ସହିତ ଆପଣଙ୍କର ଦୀର୍ଘ ନିରାମୟ ଓ ସାରସ୍ୱତ ଜୀବନର ସଫଳତା କାମନା କରୁଛୁ ।

(କର୍ଣ୍ଣେଲ କୈଳାସ ଚନ୍ଦ୍ର ମହାରଣା)
ସମ୍ପାଦକ,
ଚିଲିକା ବୋଇତ ବନ୍ଦାଣ ମହୋତ୍ସବ କମିଟି

(ଶ୍ରୀଯୁକ୍ତ ପ୍ରଶାନ୍ତ କୁମାର ଜଗଦେବ)
ବିଧାୟକ, ଚିଲିକା ଓ ଅଧ୍ୟକ୍ଷ,
ଜିଲ୍ଲା ଯୋଜନା ବୋର୍ଡ଼, ଖୋର୍ଦ୍ଧା ମହୋତ୍ସବ କମିଟି
ସଭାପତି, ଚିଲିକା ବୋଇତ ବନ୍ଦାଣ ମହୋତ୍ସବ କମିଟି



କାଲି ସକାଳକୁ
ଯଦି କେବେ ଦିନେ
ପୃଥିବୀରେ ଆଉ ମୁଁ ନଥିବି
କବିତାର ଖାତା, ବହି
ମୁହଁମାଡ଼ି ରହିଥିବ ପଡ଼ି
ଶୂନଶାନ ଚଉକି, ଟେବୁଲ୍
ଚଷମା, କଲମ...



ଜୀବନ ଭଲପାଇବାର
ପୋଷାପକ୍ଷୀ
ଯାହାକୁ ଦୁଧ, ଭାତ ଦେଇ
ସୋହାଗରେ
ପାଳିବାକୁ ପଡ଼େ
ସେଥିରୁ ଟିକିଏ
ଓଲମବିଲମ ହେଲେ
ପକ୍ଷୀ ହଜିଯାଏ
ଏକାଂତ ଶୂନ୍ୟରେ !